ବଦନୀ ଗୁରୁକେଶୀ । କୁନ୍ଦ ସୁନ୍ଦର ଦଶନୀ ମନ୍ଦହାସ୍ୟ ମଧୁର ସୁଧା ପିକ-
ଭାଷୀ ।୧୮। ନିତମ୍ବବତୀ ଉଚ୍ଚକୁଚଶୋଭନୀ ଘନଜଘନୀ ନୃତ୍ୟକାରୀ ।
ତାଳଂ ମାନ ଗ୍ରାମଂ ଲୟଙ୍କର ଅରହା[୨] ସକଳ ଜନ ମନୋହାରୀ ।
ସୁଜନେ । ନୃତ୍ୟ କରନ୍ତି ସେ ସ୍ତମ୍ଭରେ [୧] ନାନା ଅଳଙ୍କାର ଅଙ୍ଗେ
ଅଳଙ୍କାରି[୩] କର ହସ୍ତକ ହରଷରେ ।୧୯। ମନମଥ[୪] ପାଶ ପରାୟେ
ପ୍ରକାଶ ଶୋଭା ହସ୍ତକ ହସ୍ତ ତୋରା । ସେ ଠାଣିମାଣିରେ ହାସ
ଶୃଙ୍ଗାରିରେ କା ମନ ନ ପଡ଼ଇ ଧରା । ସୁଜନେ । କେତେ କହିବ ସେ
ଚରିତ । ଚନ୍ଦ୍ର ଉଦେ କାଳେ ଗଗନମଣ୍ଡଳେ ସହଜେ ନ ଦିଶେ
ଖଦ୍ୟୋତ[୫] ॥ ଜଗତ କୃତାର୍ଥ କରିବାକୁ ପାର୍ଥ[୬]ରଥରେ ବିଜେ
ଜଗନ୍ନାଥ । ଦରଶନ ଜନେ କର ଦରଶନ ମହାପରମଗତିପଥ ।
ସୁଜନେ । ଧନ୍ୟ ସେ ନଉକାବିହାର । ଇନ୍ଦ୍ରପଦବୀହିଁ ଇତର
ଦିଶଇ ଏ ଅବଲୋକନ ଯାହାର ॥ ବୃନ୍ଦାରକବୃନ୍ଦ[୭] ବଢ଼ାଇ ଅନନ୍ଦ
ଜୟ ଜୟ ସ୍ତୁତି କରନ୍ତି । ଦୁନ୍ଦୁଭି ବଜାଇ ସପୁଲକ ହୋଇ ଶିରେ
କୁସୁମ ବରଷନ୍ତି । ସୁଜନେ । ଯାତ୍ରା ବଢ଼ାଇ ଦେବଗଣେ ବମାନେ
ଅଗ୍ରେହି ଜନମନ ମୋହି କରନ୍ତି ବାହୁଡ଼ାବଙ୍ଗେ । ୨୨ ।
ଶ୍ୱେତାତପତ୍ର[୮] ଚନ୍ଦ୍ର ସୂର୍ଯ୍ୟ ତପସ୍ୱ କଳାକଳାଠ ମାଳମାଳ । ଖଦି
ଅଲଟ ସୁଧର ପଙ୍ଖା ଲେଖା କରି ନହଇ ସେ ପ୍ରବଳ । ସୁଜନେ ।
ଚନ୍ଦ୍ର-ଦୀପ ଚନ୍ଦ୍ର ଉଦିଅ । ହୁଳା ଦିହୁଡ଼ି ଧାଡ଼ି ଧାଡ଼ି ଲାଗି ସେ
ନ ଦେଖାନ୍ତି ଚନ୍ଦ୍ର ଉଦିଅ । ୨୩ । ବାଟପାକ ରଙ୍ଗଭୂମି[୯] କରି
ରଙ୍ଗ[୧୦] କରନ୍ତି ବର ବାରଙ୍ଗନା[୧୧] । କାମଶାସ୍ତ୍ରଜିତା ସଙ୍ଗୀତପଣ୍ଡିତା
ସମସ୍ତେ ପ୍ରେମେ ଜିତ ଯୁବନା । ସୁଜନେ । ଧନ୍ୟ ତାଙ୍କର ଭାଗ୍ୟରାଶି ।
ତ୍ରୈଲୋକ୍ୟଠାକୁର ଆଗେ ନୃତ୍ୟ କରି ଲଗାନ୍ତି କାମମୋହ-

---

୧ ସ୍ୱର୍ଗାଂଶ ବିଶେଷ । ୨ ଉପଯୁକ୍ତ । ୩ ମଣ୍ଡନ । ୪ କନ୍ଦର୍ପ ।
୫ ଜୁଳୁଜୁଳା ପୋକ । ୬ ଅର୍ଜୁନ । ୭ ଦେବତାମାନେ ।
୮ ଶୁକ୍ଳଛତ୍ରୀ । ୯ ନୃତ୍ୟଭୂମି । ୧୦ ନୃତ୍ୟ । ୧୧ ମାହାରି ।

ପାଣୀ । ୨୪ । ଏମନ୍ତେ ବନ୍ଦନ୍ତେ କରି ଦେବଗଣେ ନୀଳାଦ୍ରି ନଗରେ
ପ୍ରବେଶ । ଧୂପ ସାର ବର୍ତ୍ତି ଦ୍ୱାର ବଢ଼ାଇ ପୁଷ୍ପଅଞ୍ଜଳି କରି ଶେଷ୧।
ସୁଜନେ ଏ ପଦ୍ମହସ୍ତ ଦିବ୍ୟ ଫଲ୍ୟଙ୍କେ ! ପ୍ରାଣବଲ୍ଲଭୀ ପାଟମହାଦେଈ
ସେ କମଳା ସେବନ୍ତି ଜଣଙ୍କେ । ୨୫ । ନିତି ଏହିମତି ଚନ୍ଦନ-
ଉତ୍ସବ ହୁଅଇ ସ୍ନାନଯାତ୍ରା ଯାଏ । ତାହାତ ଶୁଣିବ ତିନି ତାପ ଯିବ
ମହାପବିତ୍ର ହେବ କାୟେ । ସୁଜନେ । ସଂସାରେ ଏହି କଥା ସୁଖ ।
ଏ ବାହାରେ ଆଉ ଯେତେକ ଦେଖୁଛ ଇନ୍ଦ୍ରଜାଲ ପ୍ରାୟେ ସେ
ମିଛ । ୨୬ । ଯେଉଁ ଦେହ ଘେନ ଜନମି ଅବନୀ ତାହା ନ ନେଇ
ଯିବା ବେଳେ । ମୋହ ଘର ମୋହ କୁଟୁମ୍ବ ବୋଲି ତା ଅଟଇ
ମାୟାମୋହଜାଲେ । ସୁଜନେ । ମନେ ବିଚାର କର ଏହା । କେ
କାହାର ଭାଇ କେ କାହାର ମାଇ କେ କାହା ଘରେ ବନ୍ଧୁ ସାହା । ୨୭।
ପାରିଲେ ଦୀନଜନରେ ଦାନ ଦିଅ ସକଳ ଜୀବେ ଦୟା କର । ଧର୍ମ
କର୍ମ କର ଛାଡ଼ ନ ବିଚାର ସାଧୁ ସଙ୍ଗତରେ ବିହର । ସୁଜନେ ।
ଭଜ ଶ୍ରୀ ନୀଳଗିରିନାହା । ମନ ବଚନ କର୍ମେ ଦୀନକୃଷ୍ଣ
ଭରସା କରଅଛି ଯାହା । ୨୮ ।

---

## ଅଷ୍ଟମ ଛାନ୍ଦ ।

### ରାଗ ଗୁଜ୍ଜରୀ ଖେମଟା । ଏକତାଳୀ ।

ଅହେ ସାଧୁଜନମାନେ ଶୁଣ ଶ୍ରବଣ । ମହାଗ୍ରୀଷମଋତୁରେ
ଅରତ୍ରାଣ । ଅନେକ ଚନ୍ଦ୍ର ଚନ୍ଦନ ଚର୍ଚ୍ଚିତ୧ ହେଲେ । ଅନେକ
ଶୀତଳ ଦ୍ରବ୍ୟ ମଣୋହି କଲେ । ଅନେକ ଅଳଙ୍କାର ଲାଗି ହେଲେ
ଶ୍ରୀଅଙ୍ଗ୨ । ଏତେକେହେଁ ସନ୍ତାପିତ ହେଲା ଶ୍ରୀଅଙ୍ଗ୩ । ୧ ।

---

୧ ଲେପିତ । ୨ ଜଗନ୍ନାଥ । ୩ ଶୋଭାଯୁକ୍ତ ଦେହ ।

ସ୍ଥାନ କଲୁ ବାଙ୍କି ମନେ ବେଗୁର କଲ । ସମ୍ଭ୍ରମେ ହୋଇଲେ ଶଙ୍ଗ ସାରଙ୍ଗ ଯାଗ୍ୟ । ସ୍ଥାନମଣ୍ଡପକୁ ସୁଧା ଲେପ ଦିଆଇ । ମଣ୍ଡଣି କମକ୍ତରେ ଭଣ୍ଡାର ପିଣ୍ଡାଇ । ପାଟ୍ଟନେତ ମଣ୍ଡିତ ଚିକ୍କୁଆ ଚାମର । ଚାରୁ ଚନ୍ଦ୍ରା- ତପମାନ୍ତ କଲେ ବାହାର । ୨ । ମାୟାବଲ୍ଲୀ ସୁରଙ୍ଗ ସିନ୍ଦୂର ଅମ୍ବର୪ । ମଣ୍ଡିତାରେ ଅଡ଼ମ୍ବର ଦିଶେ ଅମ୍ବର୫ । ଫୁଲଚାଙ୍କ ମଧ୍ୟେ ଫୁଲଝୁମ୍ପା ବରାଜେ । ଅବଲୋକନରେ ମନ ନୟନ ରଞ୍ଜେ । ପିନ୍ଧିଲା ସୁବର୍ଣ୍ଣ- ପଦ୍ମ ଦିଶନ୍ତି ତୋରା । ତାର ତାରଙ୍ଗ ମୁକ୍ତା ମାଣିକ୍ୟ କେରା କେରା । ୩ । ବଟନ୍ତୁ ଚତୁର୍ଥଗିମାମାନଙ୍କୁ ଦେଖି । ଚତୁ ପ୍ରାୟେ ସ୍ତବ ଦେବ ନ ଚଳେ ଆଖି । ଚନ୍ଦନଜଳ କର୍ପୂରଧୂଳ ସିଞ୍ଚାଇ । ଅଗରୁ ଧୂପରେ ସୁଶୀତଳ କରାଇ । ବଢେ ବାଟ ଯାକ ଏହୁ ପ୍ରକାରେ ତୋରା ମଣି ଧରଣୀ ମସ୍ତକ ମଣ୍ଡଣି ପରା । ୪ । ଛଇଳନାଗର ଯୁବ ପୁରୁଷସିଦ୍ଧ । ଏକେତ ଶୁକଳ କଳାବନ୍ତ ଅରଦ୍ଧ୭ । ନୋହିଲେ କଙ୍କ ସ୍ଥାନକୁ ଅରମ୍ଭ ଯୁଟେ । ମୁଁ କେତେ କହିବ ତୁମ୍ଭେ ଶୁଣିବ କେତେ । ଶେଷ ନୁହଇ ଅଶେଷ ପରମମଧ୍ୟେ । ସପ୍ତପଞ୍ଚାଶ ତରଙ୍ଗ ଗଣିଲା ପ୍ରାୟେ । ୫ । ନାନାରୂପ ମହାମଣ୍ଡପକୁ ମଣ୍ଡାଇ । ତିନଲୋକ ଲୋକଙ୍କୁ ଉଚ୍ଚାଟ ଲଗାଇ । ସଜଲାଗି ଢଙ୍କେ ଗାଢ ଯବରେ ଥାଇ । ସଜ ସାଜ ସାଜ ବୋଲି ବାଜେ ସଜାଇ । ସୁର ନର ଅସୁର ଗନ୍ଧର୍ବ ବାଦ୍ୟରେ । ସମୁଦ୍ର ଉଚ୍ଛୁଳ ସୁରବନ୍ତ ମଧ୍ୟ ପୂରେ । ୬ । ଅନେକ ହେଲା ବିହୁଡ଼ି ଚନ୍ଦ୍ର ଉଦିଆ । ଚନ୍ଦ୍ରଦୀପ ଲାଗି ଘରକେ ଚନ୍ଦ୍ର ଉଦିଆ । ଅବରୋଧ ଗହଳ ଚହଳ ଆନନ୍ଦ । ଅମ୍ବରେ୧୦ ରହି ଦେଖନ୍ତି ଅମରବୃନ୍ଦ୧୧ । ଅପସରାମାନେ ନୃତ୍ୟ କରନ୍ତି ମିଳି । ସ୍ଫଟିକ- ବଚ୍ଛୁଳ ଅଙ୍ଗମାନଙ୍କୁ ଢାଳି । ୭ । ଅଗୁରୁ ଧୂପ ଧମନ୍ତି ଦିଗରେ ବାସେ ।

---

୧ଭୃଗ । ୨ଚନ୍ଦ୍ରଯାଣି । ୩ଗୃହଦ୍ୱାର । ୪ରଙ୍ଗାଲୁଗା । ୫ଆକାଶ । ୬ଉଜ୍ଜ୍ୱଳ ନକ୍ଷତ୍ରପରି । ୭ପଣ୍ଡିତ । ୮ସମୁଦ୍ର । ୯ଆକାଶ । ୧୦ଆକାଶରେ । ୧୧ଦେବତାମାନେ ।

ସୁଧାବନ୍ଦ ପ୍ରାପ୍ୟେ ସ୍ୱର୍ଗ ପୁଷ୍ପ ବରଷେ । ଯବନଛତ୍ର ଉଭୟ ପାଶରେ ଉଡ଼େ । ଖଦି ଭ୍ରମର ଅଲଟ ଅନେକ ପଡ଼େ । ମହିମା ତାଙ୍କ ଗଣିବା କ କର ନହିଁ । ଅଣିମାଦି[1] ମୋକ୍ଷଦାତା ବକ୍ଷ୍ୟ ଯନ୍ତି । ୮ । ଜୟ ଜୟ ଶବ୍ଦ ଶୁଭଇ ଅନେକ । ଏକରୁଣ୍ଡ ଚତୁର୍ଦ୍ଦଶ ବ୍ରହ୍ମାଣ୍ଡ-ଲୋକ । କେ କେତେ ଗୀତ କବର ସ୍ତୁତି କରନ୍ତି । ଅବଲୋକନେ କଳକଲ୍ମଷ[2] ହରନ୍ତି । ଅନ୍ୟା ସେ ସିନ୍ଦୂର ଗନ୍ଧା ପାଗ ଗୃହୁଣ୍ଡି । ଗୃହିଲେ ମନଅନନ୍ଦ ଉଠଇ ପୂର । ୯ । ଶ୍ରୀ ବଳଭଦ୍ର ସୁଭଦ୍ରା ସୁଦରଶନ । ଆଗରେ ଚଳାଇ ପଟ୍ଟେ ଜଗମୋହନ । ଶ୍ରୀକର ପଇଠି ଦେଇ ଭୃତ୍ୟଙ୍କ ଶିରେ । ରଙ୍ଗିମା ଭଙ୍ଗିମା ହୋଇ ବକ୍ରେ ସ୍ଥୀରେ । କ ଉପମା ଦେବା ଯହିଁ ବର୍ଣ୍ଣନା ନାହିଁ । କବ ହେଲେ କେଉଁଠାରେ କାହା ନ କହୁ । ୧୦ । ନାନା କାମନା ଲୋକଙ୍କୁ ଦେବା ଅର୍ଥରେ । ବଚନ୍ତ୍ର କଳ୍ପତରୁ କ ଗୃହିଲେ ପୃଥ୍ୱୀରେ । ଏମନ୍ତ କଳ୍ପନା ଅବା କର ନ୍ତୁଅନ୍ତା ନେବେ ସେ ଅମୃତଫଳ ଦାନ କରନ୍ତା । ସଂସାର ଶୋକ ହରବା ତହିଁରେ ନାହିଁ । ଏନ୍ତୁ ଯେନ ଦୃଷ୍ଟି କ ସେ ଅସର କାହିଁ । ୧୧ । ପୂର୍ଣ୍ଣଚନ୍ଦ୍ରମା ମଣ୍ଡଳେ ଖେଳେ କ ଅଛି । ଏ ଅଣ୍ଡପିଂ କଥା କହନ୍ତାଇ ଭରସି । ଯେବେ ସେ ଦିବସେ କେ ଜାଡ଼ି ହନ୍ତ ନୁଅନ୍ତା । ଅକଳଙ୍କ ସଦା ପୂର୍ଣ୍ଣଭାବେ ରହନ୍ତା । ଅଘ[3] ଅନ୍ଧାର ନାଶି ହରନ୍ତା ଦୁଃଖ । କାହିଁକି ବୃକ୍ଷ ପରଯନ୍ତେ ଦିଅନ୍ତା ସୁଖ । ୧୨ । ଉପମାକୁ ନ ଆସଇ ପ୍ରଭୁଙ୍କ ବକ୍ଷେ । କଲେ ଲେଖା ହେବ ଅବବେକ ଜର୍ନ୍ଛେ । ଭୂଳରେ ସମାନ ନହେ ସକଳ ସୁରେ[4] । ଏତେବେଳେ ଦେଖ ରହୁଚନ୍ତ୍ର ଉପରେ । ଅଗତି ଲୋକଙ୍କର ଯେନ୍ତୁ ଗତିର ଗତି । ଧନ୍ୟ ଧରଣୀ ଭାଗ୍ୟ ତା ଶିରେ ବହନ୍ତି । ୧୩ । ଅଳପ ହସିଲା ହୋଇ ରଙ୍ଗ ଅଧର । ଅପସରୀ ସେବକମାନଙ୍କ ଉପର । ଅଳପ ବିଶ୍ରାମ ଯେଉଁଠାରେ କରନ୍ତି । ସବୁ ଦୁଃଖ ସମ୍ପତ୍ତି ସେଠାରେ ପୂରନ୍ତି । ଯେଉଁ-

---

୧ ଅଷ୍ଟ ଐଶ୍ୱର୍ଯ୍ୟ । ୨ ପାପ । ୩ ପାପ । ୪ ଦେବତା ।

ଅତେ଼ ପଡ଼ଇ ସେ ଅମୃତଦୃଷ୍ଟି । ସେ ଦିଗେ ବୃଷ୍ଟି ହୁଅଇ ଅମୃତ-
ସୃଷ୍ଟି । ୧୪ । ମରୁଅଜ ପ୍ରାୟେ ବେନ ପାଶକୁ ଝୁଲି । ମହାଭକ୍ତ-
ଭରେ ଧୃରେ ଭୃତ୍ୟଙ୍କୁ ପେଲି । ପୁଣି ସିଂହ ହକମିଲା ପଗାସ୍ୱେ
ହୋଇ । ମନ୍ଦ ମନ୍ଦ କରି ପାଦପଦ୍ମ ପକାଇ । କେତେହେଁ କହୁବ ସେ
ଚାଲିବା ଚାତୁରୀ । ଯେଉଁ ଚାତୁରୀରେ ଶେଷ ହୁଏ ଶର୍ବରୀ । ୧୫ ।
ରଜତଗିରିଙ୍କ ଗଜ ଉଠିଲା ପ୍ରାୟେ । ଅରୋହଣ ଅରୋହନ୍ତି ଦେ-
ବାଧିରାୟେ । ପ୍ରବେଶ ସ୍ନାନମଣ୍ଡପ ତଳା ଉପରେ । ସେ ଶୋଭାକୁ
ଉପମା ନ ଦିଶେ ସଂସାରେ । ହରହର ବଦରେ କି କୈଳାସରେ ।
କେହୁ କେହୁ ଭାବନ୍ତି ଏମନ୍ତ ମନରେ । ୧୬ । ରଜତପର୍ବତ ହୀର-
ମର୍କତ ଶୃଙ୍ଗ[1] । ମଧ୍ୟରେ ସୁବର୍ଣ୍ଣ ଲତା ହୋଇଛି ସଙ୍ଗ । ଏମନ୍ତ
ବୋଲିବାକୁ ବଚନ ନ ଆସେ । ଅଲକ୍ଷ୍ୟ[2] ଲକ୍ଷ୍ୟ[3] ଲକ୍ଷଣେ କେତେ-
ବେଳେ ସେ । ଅଶେଷ ଶୋଭା ତାଙ୍କ ମନ୍ଦି ନ ଯାଏ । ଅକାଶେ
ଯେମନ୍ତ ବୃଷ୍ଟି ଦୃଷ୍ଟି ନ ପାଏ । ୧୭ । ଏ ସମୟରେ ଚରମ[4] ଚମୂନ୍ତି
ଚନ୍ଦ୍ର । ଉଦୟ[5] ଶିରେ ଉଦୟ ଗଗନରେନ୍ଦ୍ର[6] । ମାନବେ ମାନସ
ସ୍ନାନ କଥାରେ ଦେଇ । ସ୍ନାନ କରି ଅସନ୍ତି ସେ ସଭୟ[7] ହୋଇ ।
ଦେଖନ୍ତି ସ୍ନାନମଣ୍ଡପେ ନୀଳାଦ୍ରିଚନ୍ଦ୍ର । ଅରତ ଅଘ ବାରଣ[8] ମରୁ-
ଧାରୀନ୍ଦ୍ର[9] । ୧୮ । ଉତ୍ତରଦିଗରେ ଅଛି ସୁବର୍ଣ୍ଣକୂପ । ତିନକୋଟି
ପଞ୍ଚାଶଲକ୍ଷ ତୀର୍ଥ ରୂପ । ପଣ୍ଡା ମର୍ଦ୍ଦଲ ବାଜଇ ଅର୍ଦ୍ଧରାତ୍ରରେ । ତହୁଁ
ଜଳ ଆଣଇ ସୁବର୍ଣ୍ଣପାତ୍ରରେ । ଅଧିବାସ କରି ତାହା ଥୁଅନ୍ତି ନେଇଁ ।
ନୀଳାଦ୍ରିନିବାସ[10] ସ୍ନାନ କରିବା ପାଇଁ । ୧୯ । ମନ୍ତ୍ରବିଧାନେ ସେ
ଜଳେ ସ୍ନାନ କରନ୍ତି । ମାନବେ ସେ ଜଳ ପାନେ ପାପ ହରନ୍ତି । ପୁଣି
ବହଳ ଚନ୍ଦନ ଜଳ ଢାଳନ୍ତି । ନାଃସମୟେ ସସାରସନ୍ୟାପେ ବଢ଼ାଛି ।

---

୧ ରଜତପର୍ବତ ପରି ତଳା, ହୀର ଓ ମର୍କତମଣି ଶୃଙ୍ଗ ପରି ବଳରାମ ଓ କୃଷ୍ଣ । ୨ ଅତୁଲ୍ୟ । ୩ ତୁଲ୍ୟ । ୪ ପଶ୍ଚିମଦିଗ । ୫ ଉଦୟଗିରି । ୬ ସୂର୍ଯ୍ୟ । ୭ ଭୂରି । ୮ ପାପହର୍ତ୍ତା । ୯ ମରୁସିଂହ । ୧୦ ଜଗନ୍ନାଥ ।

ସେହିକାଳେ ପ୍ରଭୁଙ୍କର ଯେମନ୍ତ ଶୋଭା । କେଉଁ ଉପମା ଚାହିଁ କହିବା ଅବା । ୨୦ । ନିର୍ମଳ ଗଗନେ ଉଦେ ଶରଦଘନ । ଗଙ୍ଗା୧ ଯମୁନାଂ ଉପରେ କରେ ଗମନ । ଏମନ୍ତ ବୋଲି ବୋଇଲେ କେଉଁ ଚତୁର । କେ ଦେଇ ହୃଦକୁ ଚିହ୍ନଚାପ ଛଡ଼ାଇ । କହ ବଚନ ଶ୍ରୀଭୁଜ ରଖିବା ପାଇଁ । ଅଲକ୍ଷ୍ୟ କଥାରେ ଲକ୍ଷ୍ୟ କରଇ କେଇ । ୨୧ କେ ବୋଲେ ଗ୍ରୀଷମେ ପଦ୍ମାକରକୁ୨ ମନ୍ଥି । ବାହାର ହୋଇଲେ ଯେସନେ ବିଶ୍ରାନ୍ତ ହସ୍ତୀ । ଏହିରୂପେ ନାନା କଥାମାନ କରନ୍ତି । ଘନ-ଶ୍ୟାମ ନାଥ ତା ଘନରେ ବହନ୍ତି । କନ୍ଦର୍ପ ଦର୍ପ ହରଇ ଯେଉଁ ଶ୍ରୀଭୁଜ । କେ ଯଶ ପାଇବ ଚାହିଁ ଉପମା କହୁ । ୨୨ । ସ୍ନାନ ବହାଇ ପ୍ରଭୁ ହୁଅନ୍ତି ସୁବେଶ । ଲାଗି ହୋଇକରି ଝୀନପଟନ ବାସ । ଶ୍ରୀଭୁଜେ ଗଉଁଛ ଦିବ୍ୟ ଡାଳମ୍ବା କେତେ । ପଦ୍ମହରଣ ପଡନ୍ତ ମୋହେ ଜଗତ । ଧୂଳମାଳ ଚୂଳ କରଗତ ଅଳକା । ଗୁହିଁଲେ ଛଡ଼ାଇ ଭଞ୍ଜନୀଳ ଦକା । ୨୩ । ଏହିରୂପେ ଘେଇ ବଳଭଦ୍ରଙ୍କ ବେଶ । ଫୁଲମାଳମାନଙ୍କେ ଶ୍ରୀଅଙ୍ଗ ଅଦୃଶ୍ୟ । ବେନି ପାରୁଶରେ ବୀରଛତ୍ର ଉଡ଼ନ୍ତି । କହି ନୁହଇ ସେକାଳ ଶୋଭାସମ୍ପତ୍ତି । ମହାଭୀଡ଼ ଗହଳ ଲୋକ ଜନ୍ମାଜନ୍ତି । ବେନି ପାରୁଶରେ ସ୍ୱର୍ଣ୍ଣଡ-ଛତ୍ର ଉଡ଼ନ୍ତି । ୨୪ । ଗୀତ ବାଦ୍ୟ ନୃତ୍ୟ ଜୟ ଜୟ ଶବଦ । ବ୍ରହ୍ମ ଦେବତାମାନଙ୍କ ନିଗମପଦ୩ । ଭାଟଙ୍କର କହିବାର ସାଧୁ କୀର୍ତ୍ତନେ । ଏକ ହୋଇ ସବୁ ଧ୍ୱନି ପୂରେ ଗଗନେ । କେ ଚନ୍ଦନ ଜଳମାନ ଧରି ବସନେ । ଧର ଧର ବୋଲଣ ଦିଅନ୍ତି ନରମାନେ । ୨୫ । ମଣୋହି ବିହାର ପ୍ରଭୁ ଜଗନ୍ନାଥେଶ୍ୱର । ବାହୁଡ଼ାବିଜୟ କରିବାକୁ ବଶୁର । ବଳଦେବଠାକୁରଙ୍କୁ ଅଗ୍ରକୁ କରି । ପଛ ପଟୋଆସ୍ତ ନାଳକିରବହାରୀ । ଦକ୍ଷିଣମୂରତି ବହାପନା ହୁଅନ୍ତି । ଦେଖିଲା

---

୧ଗଙ୍ଗା ଜଳ ଶୁକ୍ଳ, ଯମୁନା ଜଳ କଳା । ୨ପଦ୍ମଯୋଖରୀ ।
୩ବେଦଶାସ୍ତ୍ରାଦିର ପଦ ।

ଲୋକଙ୍କୁ ଚଉବର୍ଗ ଦିଅନ୍ତ । ୨୬ । ନୀଳାଦ୍ରି ନଗରେ ଯାଇ ପ୍ରବେଶ ହୋଇ । ଦଶ ପାଞ୍ଚ ଦିନ ଦରଶନ ନ ହୋଇ । ଜନ ନୟନ ଉତ୍ସବ କରିବା ପାଇଁ । ନେତ୍ରଉତ୍ସବ ଯାତ୍ରା କରନ୍ତ ଗୋସାଇଁ । ରଥ ଉପରେ ଚଣ୍ଡିଗ୍ର ନେତ୍ରାଲଙ୍କାର । ଯାହା ଦର୍ଶନ କରନ୍ତ ବ୍ରହ୍ମାଦିସୁର । ୨୭ । ଶାରଥୀ ହୋଇବେ କନକ ଉଦ୍ଧବ ତାହା । ମହାପାପ ନଷ୍ଟ ଯାଇ ସୁମର ଯାହା । ବ୍ରହ୍ମହତ୍ୟା ଦୂରେ ଯେଉଁ ରଥର ସ୍ଥଇ । ଯେଉଁ ରଥ ଚୁଇଁ ମହାପବିତ୍ର ହୋଇ । ଶ୍ରୀଗୁଣ୍ଡିଚ୍ଚ ବୋଲି ଭକ୍ତେ କୀର୍ତ୍ତନ କଲେ । ସମସ୍ତ ବେଦନାମାନ ଭୁଲଇ ଭଲେ । ୨୮ । ରଥେ ବଜେ କରଥିବେ ଜଗଦୀଶ୍ୱର । ସେ ଯାଇ ପ୍ରତିବିମ୍ବିବ ଯେଉଁ ଜଳର । ସେ ଜଳସ୍ଥାନରେ ଯେତେ ପୁଣ୍ୟ ହୁଅଇ । କ କରିବ ଗଙ୍ଗା ଗସ୍ଥୂ ସାଗର ଯାଇ । ଶ୍ରୀଗୁଣ୍ଡିଚ୍ଚ ଶ୍ରୀଗୁଣ୍ଡିଚ୍ଚ ବୋଲ ହେ ଜନେ । ଶ୍ରୀଗୁଣ୍ଡିଚ୍ଚ ଦୀନକୃଷ୍ଣ ଗାଏ ବଚନେ । ୨୯ ।

---

## ନବମ ଛାନ୍ଦ ।

ରାଗ ପାହାଡିଆକେଦାର । ନାଳ ୧ଏକ ।

[1] ଏବେ କହିବା ଶୁଣ ହେ ଜନେ ଏକଚାନରେ ଅନନ୍ଦମନେ ଶ୍ରୀଜଗନ୍ନାଥଦେବଙ୍କଙ୍କ ଗୁଣ୍ଡିଚ୍ଚ କଥା ହେ । କର୍ଣ୍ଣପଥକୁ ଅମୃତମୟ ଅଶେଷ ପାପ କରିବ କ୍ଷୟ ଛଡାଇ ମହାଦୁଃସହ ଭବବନ୍ଧନ ବ୍ୟଥା ହେ । ନାନା ଉତ୍ସବରୁ ସେ ଉତ୍ସବ ସାର ହେ । ତିନିଲୋକଙ୍କ ନେତ୍ର ସୁଖକାର ହେ । ବରଷା ଅଗମରେ ସେ ଲୀଳା କରନ୍ତ

---

୧ ନୟନଭୂଷଣ ।

ଭବସାଗରେ୧ ଭେଳା-କମଳମୁଖୀ-କମଳା-ବର୍ଣ୍ଣ-ମର୍କଟଦ୍ୱାର୨ ହେ ॥ ଯହିଁ ଅଷାଢ଼ମାସ ପ୍ରବେଶ ହୁଅନ୍ତେ ଘନ ଘୋଟି ଅକାଶ ଗିରମସ୍ତକ ଗିଳ କରଇ ଗମ୍ଭୀର ଘୋଷ ହେ । ମେଘ ପୃଷ୍ଠରେ୩ ମେଦିନୀ ହେଲେ ଉପର ନାଶି ବିବିରେ ସୁବାସ, କୃଷିକାଳକ ଅଧି ମାନସ କରେ ଉଲ୍ଲାସ ସେ । ମଧ୍ୟାହ୍ନେ ବୃଷ୪ ମୁଖନ୍ତି ମଳିନାସ୍ତବ ହେ । ମଧୁ ଉଡେ ଗୃଢକ କରନ୍ତି ଘର ହେ । ମାନସରକୁ ଗମନ୍ତି ହଂସେ ମଧ୍ୟରେ ଇନ୍ଦ୍ରଗୋପ୫ ବକାଶେ ମାଣିକ୍ୟେ ମଣ୍ଡି ହୋଇଲା ପ୍ରାୟେ ସୁନ୍ଦର ସ୍ଥଳ ହେ । ୨ । ଫୁଟନ୍ତି ଗୈରୁଗୃମର ଫୁଲ୬ ଫୁଲବଛିଶ୭ ଗୃମର ଭୁଲ ଧୂଷାରବନ୍ଦମୁଖୀ୮ ଭରବ କାନ୍ତେ ଯେ ଧଲ ହେ । ଯେଉଁ ଋତୁରେ ଯଦ୍ୟପି ଭଲ ହୋଇ ବଢଇ ଦମ୍ପତି୯ ଗେଲ ଏକାକୀ ଲୋକମାନଙ୍କୁ ହୁଏ କନ୍ଦର୍ପଶେଲ୧୦ ହେ । କାମୀ କାମିନୀ ଯହିଁ ଦେଲେ ଅଭେଟ ହେ । ଭୋଗ କରନ୍ତି କାମ-କୃପାଣ୧୧ଗେଟ ହେ । ଦିନେ ଅନ୍ଧାର ହୋଏ ଯଦ ପଥିକଙ୍କଟେ ପଡେ ଯଙ୍କ ଅରତ ହୋଇ ବୋଲନ୍ତି ରକ୍ଷ ଚନ୍ଦ୍ରମୁକୁଟ୧୨ ହେ । ୩ । ଅତି ବଳଟ ଡାହୁକ ଟେ ଯେଉଁ କାଳରେ ହୁଏ ଉଳ୍ଲଟ କେକା୧୩ କେକୀ୧୪ ମଣ୍ଡଳ ମଧ୍ୟେ କରନ୍ତି ନାଟ ହେ । ଅଗାଟ ବାଟ ହୁଏ ଅବଟ୧୫ ହୁଏ ଅଚ୍ଛିନ୍ନ ହୁଏ କୃପାଟ୧୬ ତଟିନୀ ଜଳ୧୭ ପ୍ରବଳ ହୋଇ ଚଳନ୍ତି ତଟ ହେ । ନାବ ଘେନ ନାବକେ ଜଗନ୍ତି ଘାଟ ହେ । ପଥିକଙ୍କ ଗମନ ହୁଅଇ ମଠ ହେ । ସବୁ ଅଡ଼ାରେ କମଳମଧ୍ୟେ୧୮ ପଦ୍ମ କୁମୁଦ ଅଦୃଶ୍ୟ ହୁଏ ସୁନ୍ଦ

---

୧ସଂସାରସମୁଦ୍ରରେ । ୨ଲକ୍ଷ୍ମୀଙ୍କର କାନ୍ତ ମର୍କଟଦ୍ୱାର ସନ୍ଧ୍ୟାଶ ଜଗନ୍ନାଥ । ୩ ଜଳରେ । ୪ ମେଷ । ୫ବର୍ଷାକାଳୀନ ସୁରଙ୍ଗ ପୋକ ବିଶେଷ । ୬କାଶଫୁଲ । ୭କାମ । ୮ପ୍ରଫୁଟିତପଦ୍ମମୁଖୀ ସ୍ତ୍ରୀ । ୯ସ୍ତ୍ରୀପତି । ୧୦ଶୂଳ । ୧୧କନ୍ଦର୍ପଖଡ୍ଗ । ୧୨ଶିବ । ୧୩ମୟୂର । ୧୪ମୟୂରୀ । ୧୫ଗର୍ତ୍ତ । ୧୬ବନ । ୧୭ନଦୀଜଳ । ୧୮ଜଳମଧ୍ୟେ ।

ଜମଳ ଜମଳାଫଳିଂ ପୂରେ ପଇଠ ହେ । ୪ । ପ୍ରତି କେଦାରେ କନ୍ଦର୍ପ ଭୂପ ପ୍ରାଙ୍କେ ଶୁଭଇ ଷଡ଼ଜସ୍ୱର୨ ଋଷଭ୩ ଧଇବତ୪ ମଧମ ପ୍ରେଜନ ସ୍ୱର ଯୋଗ ହେ । ଶୁଣି ପଥିକେ ଭୟେ ଅଥିର ଅସନ୍ତ ଯେ ଯାହାର ମନ୍ଦିର ପଶନ୍ତି ପ୍ରିୟା ସଙ୍କଟ ଭୁଟଟିରକନ୍ଦର ହେ । ପ୍ରେମେ ବୃକ୍ଷରୁ ଲତା ନୁହେ ଅନ୍ତର ହେ । ପକ୍ଷୀଜୀବମାନେ ଯେ ଜରନ୍ତି ଘର ହେ । ମକରଧ୍ୱଜ୫ ବଜ୍ରନପୁର ଯୋଗ କରନ୍ତି ଉତ୍ତମ ନର ବଧୂଭାତୃଭ୍ରାମାନଙ୍କୁ ଯେଉଁ ବିରଷା ସଲ ହେ । ୫ । ମଲ୍ଲୀ ମାଳତୀ ଜାତି କନ୍ଦଳୀ୬ ଭୁଟଜ୭ ଆଦି କଦମ୍ବେ ବେଳ କରନ୍ତି ଯେଉଁ ସମୟେ ଭୃଙ୍ଗବୃନ୍ଦମ୍ବେ୮ ମିଳ ହେ । ଷମା ଅଧରହାସକୁ ବଳ ଫୁଟନ୍ତି ଯହିଁ ଗଙ୍ଗଶିଉଳ ଯହିଁ ଅନଙ୍ଗ ବରସ୍ପ୍ରଅଙ୍ଗ ଦିଅଇ ଢାଳ ହେ । ଏହୁ ପ୍ରକାରେ କେତେ କହିବା ଗ୍ରାଳ ହେ । ପ୍ରସଙ୍ଗକୁ ମୁଁ ଏତେ କହିଲି ଛଳ ହେ । ପ୍ରଧାନ ରସ ଯିଁ ତାକୁ ଭଜ ରଖିଲି ଋତୁ ବର୍ଣ୍ଣନାବଳୀ ଯେଣୁକରି ସେ ସମସ୍ତ ଲୋକ ସୁଖସଙ୍ଗ ହେ । ୬ । ଏମନ୍ତ ଯେଉଁ ଆଷାଢ଼ମାସ ଶୁକ୍ଳଦ୍ୱିତୀୟା ତିଥି ଦିବସ ପୁଷ୍ୟାନକ୍ଷତ୍ର ସହିତେ ହୋଇଥାଇ ପ୍ରବେଶ ଯେ । ସେହୁ କାଳରେ ଦେବନରେନ୍ଦ୍ର ମହାକରୁଣ୯ କୃପାରେ ଚନ୍ଦ୍ର ଆରତ ଘୋର ଅନ୍ଧାର-ଚନ୍ଦ୍ର ବଳେ ପ୍ରକାଶ ହେ । ପ୍ରାତଃ ମହୋତ୍ସ ସ୍ନାତ ବାହାର ହୋଇ ହେ । ବୀର ବେଶରେ ବୀରଛତ୍ର ଧରାଇ ହେ । ବାଜଇ ବୀରବାଦ୍ୟ ଅନେକ ଢକ୍କା ମର୍ଦ୍ଦଳ ମେଘା ନମକ ପଡ଼ିଛି ତିଳପୁରେ ଚମକ ଦର୍ଶନ ପାଇଁ ଯେ । ୭ । ଶଙ୍ଖ ମହୁରୀ ବୀରକାହାଳ କେ ଜୟ ଜୟ କେ ହୁଳହୁଳୀ ମଙ୍ଗଳଗୀତ ମଙ୍ଗଳପାଠ ନୁହଇ କଳ ହେଁ । ମଣିମା ଡାକ ଅନେକ ଘଡ଼େ ଅନେକ ବର୍ଣ୍ଣେ ପତାକା ଉଡ଼େ ନନ୍ଦୀ

---

୧ଜଗନ୍ନାଥ, ବନ୍ଧୁ । ୨ମୟୂର ସ୍ୱର । ୩ବୃଷଭସ୍ୱର । ୪ଭେକସ୍ୱର । ୫ମକରାକୃତି ପତାକା । ୬ସମ୍ପୂର୍ଣ୍ଣ ବାଁ କଢ଼ୀ । ୭ଗିରିମଲ୍ଲୀ । ୮ଭ୍ରମରମାନେ । ୯ପରଦୁଃଖକାତର ।

ଚାମର ଢାଳେ ସମ୍ପୂର୍ଣ୍ଣ ଲକ୍ଷ୍ମୀ ବଳ ହେ । ଅତରରେ ଅଗୁରୁ ଧୂପହିଁ ବାସେ ହେ । ଆକାଶରୁ ସୁବାସ ଫୁଲ ବରଷେ ହେ । ଅଷ୍ଟ ଅକାଶେ ଅମରେ ରହି ଅଶ୍ରୁ ପୁଲକେ ଆନନ୍ଦେ ଯହିଁ ଅନେକ ସ୍ତୁତି କରନ୍ତି ଉତ୍କଣ୍ଠେ ସନ୍ତୋଷେ ହେ । ୮ । ଏମନ୍ତେ ବଡ଼େ ଜଗନ୍ତ ଧୀରେ ଶ୍ରୀଭୁଜ ଦେଇ ଭୃତ୍ୟଙ୍କ ପରେ ଅଳପ ହସି ବେନ ପାଶକୁ ଚାହିଁ ଗୁହାନ୍ତି ସେ । ଅମୃତଦୃଷ୍ଟି ପଡ଼ିବା ମାତ୍ରେ ଉତ୍ତମାଧମ ମଧ୍ୟମ ପାତ୍ରେ ଧର୍ମାର୍ଥ କାମ ମୋକ୍ଷ ଚତୁରବର୍ଗ ପାଆନ୍ତି ସେ । କୃପାକର[1] କରୁଣା କର ବିସ୍ତାର ହେ । କେତେ ଲୋକଙ୍କୁ ଦେଇ କର ନିସ୍ତାର ହେ । ବଳଦେବଙ୍କ ଆଗରେ ଚାରି ହିନ୍ଦୁଣୀ ଗର୍ଜ୍ଜାପାଗକୁ ଧରି ନୀଳାଦ୍ରିନବରରୁ ବାହାର ଜଗତେଶ୍ୱର ହେ ।। ସେହିଭାବରୁ ସୁଭଦ୍ରା ସଙ୍ଗେ ସୁଦରଶନ ବିଜୟ ରଙ୍ଗେ ମଦନଗୋପାଳଙ୍କୁ ଘେନିଣ ବିଜୟ ଗଥେ ହେ । ସେକାଳେ ଯେଉଁ ଶୋଭାସମ୍ପତ୍ତି କାହାରୁ କଥନୀୟ ନୁହନ୍ତି ସେହି ଜାଣନ୍ତି ଯେ ଦେଖିଛନ୍ତି ନୟନପଥେ ହେ । କେ କହିବ ସେ ରଥ ମଣ୍ଡଣି ଶୋଭା ହେ । ଝଲ ଝଲ ଝଲକେ ଦର୍ପଣପ୍ରାୟ ହେ । ସରୁ ସୁନ୍ଦର ହିନ୍ଦୁଣୀପାଟ ପାଟପଉଣୀ ନେତ୍ର ପ୍ରକଟ ଚାରୁ ଚାମର ଫୁଲମାଳାରେ ନୟନ ଲୋଭା ହେ । ୧୦ । ସୁବର୍ଣ୍ଣ ଘଣ୍ଟି ଘାଗୁଡ଼ିମାନ ବିବିଧ ମଣିଗଣେ ମଞ୍ଜୁଳ[2] ରତ୍ନକଳସ ଉପରେ ଶୋଭେ ଚଗଲ ଦେଖି ହେ । ନଟନାଗର[3] ହସ୍ତକୃଦାତ ପ୍ରାୟେ ବିବିଧ ଗତିରୁ ସ୍ୱାର୍ଥ ଗଞ୍ଜଚଞ୍ଚଳ ନାମରୁ ନାନାପ୍ରକାରେ ବଙ୍କ ହେ । ଯେଉଁ ରଥରେ ବସନ୍ତେ ଦେବାଧିଦେବ[4] ହେ । ତହିଁ ଶୋଭା କେ ବଚନରେ କହିବ ହେ । ଦଶଚତୁର ଲୋକ ଉପମା ନାହିଁ ତହିଁରେ ସେ ସୁଖ ସୀମା ନୋହିଲେ ଜପି ତ୍ରୈଲୋକ୍ୟମୋହନଙ୍କୁ ବହନ୍ତ ହେ । ୧୧ । ଧନ୍ୟ ସେ ରଥ ଧନ୍ୟ ସେ ପଥ ଯହିଁ ବିଜୟ ଶ୍ରୀଜଗନ୍ନାଥ ଧନ୍ୟ ଜନଙ୍କ ନୟନ ଧନ୍ୟ ଗଣ୍ଡିଚ୍ଚ ଟେକ ହେ । ଯହିଁକି ନାନାଦେଶରୁ ଲୋକ ଆସନ୍ତି

---

୧ ଦୟାମୟ । ୨ ସୁନ୍ଦର । ୩ ରସିକ-ନାଟୁଆ । ୪ ଜଗନ୍ନାଥ ।

ହୋଇ ମହାଉସ୍ଛବ ଅନବରତେ ଉଚ୍ଛାହ ହର ମହିମା-ଡାକ ହେ ।
ଅଙ୍ଗ ବଙ୍ଗ କଳିଙ୍ଗ ମଗଧ କାଶୀ ହେ । ନଟ ଭୋଟ କର୍ଣ୍ଣାଟ ଗଉଡ଼-
ଦେଶୀ ହେ । କନୌଜ କାମରୂପ ନେପାଳ କେରଳ କୁରୁକ୍ଷେତ୍ର
କୁନ୍ତଳ ସିନ୍ଧୁ ମାଳବ୍ୟ ଶୈଳ ପଞ୍ଚାଳ ସିଂହଳବାସୀ ହେ । ୧୨ ।
ସୌରାଷ୍ଟ୍ର ମହାରାଷ୍ଟ୍ର ଅବନ୍ତୀ ଏ ଆଦି ନାନାଦେଶୁ ଆସନ୍ତି ବିବିଧ
ଯାନମାନ ଆରୋହି କେ ପାଦଗତି ହେ । କେତେ ନୃପତି କେତେ
ସମ୍ପତ୍ତି ଘେନି ଆସନ୍ତି ନ ପାଇ ଭ୍ରାନ୍ତି ନଦୀ ସମୁଦ୍ର ପଶିଲ ପ୍ରାୟେ
କ୍ଷେତ୍ର ପଶନ୍ତି ହେ । କେହି ଠାବ ଠମାଳ ହରଷ ରଙ୍ଗେ ହେ ।
କେହି ଜଗମୋହନ କଥାପ୍ରସଙ୍ଗେ ହେ । ଯୁବା ଯୁବତୀ ଯତି ସନ୍ନ୍ୟାସୀ
ସାଧୁ ଦୁର୍ଜନ ପଣ୍ଡିତ ମିଶି ଚୋର ସାଧବ ଅଗୁରବନ୍ତ ଗୃହୀନ ସଙ୍ଗ
ହେ । ୧୩ । ଏରୂପେ ନାନାମାର୍ଗେ ଆସନ୍ତେ ଠାବଠାବକେ ରହନ୍ତି
ଶ୍ରାନ୍ତେ କେଉଁ ଯୁବତୀ ବୋଲଇ କାନ୍ତେ ନିଷ୍ଠୁରେ ଗୃହୁଁ ହେ ।
ଯିବାରେ ମୋର ଶକତି ନାହିଁ ଆଗରେ ଦଣ୍ଡେ ଯିବାକୁ ଚହ୍ନି ଶୁଣି
ନାୟକ ବୋଲଇ ହେଉ ପରିଣସହୁ ରେ । କେଉଁ ଯୁବତୀ ଅତି
ଜଡମ୍ବତୀ ହେ । କାନ୍ତ କର ଧର ସେ କରଇ ଗତି ହେ । ବୋଲନ୍ତି
କେତେ ଦୂରରେ କ୍ଷେତ୍ର ନାହିଁ ହେବେନ କମଳନେତ୍ର ହେଲାଣି
ଆସି ବୋଲନ୍ତେ ଶୁଏ ହରଷମତି ହସ ।। ଶ୍ରମେ ପ୍ରେମରେ କାନ୍ତକୁ
ଗୃହିଁ କେଉଁ ସୁନ୍ଦରୀ ବୋଲଇ ରହ ଶୃଙ୍ଖଳାକୁଡ଼ ଚରଣ ମୋର
ଚଳଇ ନାହିଁ ହେ । ଏଠାରୁ ମୋତେ ନେବ କି ବହି ଶୁଣି ନାୟକ
ବୋଲଇ କେହି ନ ଥିଲେ କେଉଁ ଚିନ୍ତ ଏ କଥା କମଳମୁହିଁ ରେ ।
ଭ୍ରମରରୁ ଇଷି ଇଷି କେ ହସି ହେ । ନାଷା ତୋଳ ପାଦପତଳରେ
ବସି ଯେ । ଝଲକ ଚନ୍ଦ୍ରମୁହିଁ ହଲାଇ ହସି କାନ୍ତକୁ କହେ ଗେହ୍ଲାନ୍ତ
ମହାପ୍ରଭୁଙ୍କ ଯାତ୍ରାଫଳକିଁ ଦିଶିଲା ଆସି ଯେ । ୧୪ । ଶୁଣି ଦୟିତ
ବୋଲେ ଏ ସତ କହିଲ ଯେଉଁ କଥା ଉଚିତ କ୍ଳେଶ ନୋହିଲେ
ଶ୍ଳେଷ୧ ନହଇ ଫଳ ପାଇବା ଗୋ । ସୁମନା୨ ହୋଇ ବମନା

---

୧ ସଂଯୋଗ । ୨ ସ୍ତ୍ରୀ ଏବ ଉତ୍ତମ ସଙ୍ଗର ଲୋକ ।

ହେଲେ ଅସୁନ୍ଦରିହିଁ ଦିଶଇ ଭଲେ ତୁମ୍ଭେ ସବେଙ୍କ ତହୁଁ ଅଧିକ
କେତେ କହିବ ଗୋ । ଏହା ଶୁଣି ହସିଲା ହରିଣଦୃଶା ଯେ । ହାତେ
ହାତକୁ ମାରି କଲା ପ୍ରଶଂସା ଯେ । ପୁରୁଷୋତ୍ତମ କଥାକୁ ଛଳ କହି
ଥିଲତ ପଣ୍ଡିଲ ବଳ ନୋହିଲେ ମୋର ତୁମ୍ଭଙ୍କୁ ହୋଇଥିଲା ସମସ୍ୟା୧
ହେ । ୧୬ । ପ୍ରେମକଳହରେ ଯେଉଁ ବଚନ କହି କହିଲେ ସେହି
ମିଥୁନ୨ ବିଗ୍ରହ ବୃଦ୍ଧି ଭାବିଲେ ଏ କଥାହିଁ ସେ କଥା ହେ ।
ତାହା କେତେହେଁ କହିବ ବସି ଯେ କାମସିନ୍ଧୁ ଲହରୀଗଣି କହି
ବସିଲେ ସହଜେ ସେତ ହୋଇବ ପୋଥା ହେ । କେଉଁ ଯୁବତୀ ଧରି
କାନ୍ତ ପଣନ୍ତ ଯେ । ମନେ ଘେନ ତେଁ ଏହୁ କଥା ସମସ୍ତ ହେ ।
ଏହୁ ବରଷାକାଳରେ ଅତି ପ୍ରିୟବାଦିନୀ ସୁଗୁଣବତୀ ପ୍ରିୟାକୁ ଛାଡି
ବଞ୍ଚ କରନ୍ତି କମଳାକାନ୍ତ ହେ । ୧୭ । କେଉଁ ନାଗରୀ ମଦନ-
ମତ୍ତେ ନାଗର ଆଗେ ବହେ ଉଚ୍ଚତେ ଏକାକୀ ହୋଇ ଯଉଲେ
ତଳ ତୁମ୍ଭେ ଯେ ସୁଖେ ହେ । ଅଙ୍ଗିଗତିରେ ରହିଲେ ଏକା ପାଅନ୍ତି
ସିନା ଅନେକ ଦିନ ତୁମ୍ଭ ସଙ୍ଗୁଁ ମୁହିଁ ମରନ୍ତି ସନ୍ତାପ ଦୁଃଖେ
ହେ । ଯାତ୍ରାକାଳେ ନାରୀକୁ ଛାଡିଲେ ନାହା ହେ । ଆଉ ଯଛୁ କ
କେହି ହେବାକୁ ସାହା ହେ । ଆଗ ହେଳରେ ବୃଦ୍ଧ ତୁମ୍ଭର ହୋଇ
ନ ଥିଲା ଏତେ ନଷ୍ଟୁର ଏବେ ଏ ଦେବଗଣଙ୍କଠାରୁ ଶିଖିଲ ଏହା
ହେ । ୧୮ । ନର ବନ୍ଧର ଗନ୍ଧର୍ବ ଆଦି ଆଦି ବହୁଧ ଯତି ବନିତା
ହାବଭାବାଦି୩ ବହୁଧ ଅଳଙ୍କାର ଦେଖାଇ ହେ । ଅସନ୍ତେ ସୁଖେ
କ୍ଷେତ୍ରବରକୁ ପଞ୍ଚକ୍ରୋଶ ୪ ପଞ୍ଚଶରକୁ କାମ୍ଭେ ଖଣ୍ଡି ଭକ୍ତମାନଙ୍କ
ଅଙ୍ଗ ଯୋଗଇ ହେ । ଜଗବନ୍ଧୁ ଦର୍ଶନେ ସବୁ ଖଣ୍ଡନ୍ତି ହେ । ପରମା-
ନନ୍ଦ ସୁଖ ଭୁଞ୍ଜେ ଜନ୍ତୁ ହେ । ଶ୍ରୀ ଜୟ ଜୟ ଶ୍ରୀ ଜଗନ୍ନାଥ ଜୟ ଜୟ
ଶ୍ରୀ ବଳଭଦ୍ର ଜୟ ସୁଭଦ୍ରା ବୋଲି ମସ୍ତକେ କର ଯୋଡନ୍ତି ହେ ॥
ଜୟ କମଳପତ୍ରଲୋଚନ ଜୟ କଳୁଷ୫ କଷ୍ଟମୋଚନ ଜୟ କମଳା

---

୧ ପୂରଣାର୍ଥ ପ୍ରଶ୍ନ । ୨ ଦୁହେଁ । ୩ ଅଙ୍ଗଭଙ୍ଗୀ ପ୍ରଭୃତି ।
୪ କନ୍ଦର୍ପ । ୫ ପାପ ।

ମୁଖକମଳ ମତ୍ତଭ୍ରମର ହେ । କମ୍ବୁକଣ୍ଠକ ନୀଳଗିରିର କୃପାସମୁଦ୍ର
କୈବଲ୍ୟ କର କୌସ୍ତୁଭ ପ୍ରିୟ କଉମୋଦକୀ[୧] ରଥାଙ୍ଗଧର[୨] ହେ ।
ପ୍ରଭୁ କୋଟି ବ୍ରହ୍ମାଣ୍ଡ ପ୍ରତିପାଳକ ହେ । ପଞ୍ଚଜନ୍ୟ[୩] ନୀହାର[୪] ପଦ୍ମ-
ଧାରକ ହେ । ପଞ୍ଚଜନଙ୍କ[୫] ପାରିଜାତିକ[୬] ପରମାନନ୍ଦ ସୁଖଦାୟକ
ଜୟ ଜୟ ଶ୍ରୀଗୁଣ୍ଡିଚ କଉତୁକୀ ନାୟକ ହେ । ୨୦ । ଏହି ପ୍ରକାରେ
ଜେ ଜେତେ ସ୍ତୁତି କରି ଦର୍ଶନ ସୁଖେ କରନ୍ତି କଳି କଳୁଷ ସନ୍ତାପ ସଙ୍ଘା-
ତକୁ[୭] ହରନ୍ତି ସେ । କଦମ୍ବଫୁଲ ପ୍ରାୟେକ ଅଙ୍ଗ ଦିଶେ ପୁଲକ ହେବାରୁ
ସଙ୍ଗେ ଝରେ ସମାନେ ନେତ୍ରୁ ଆନନ୍ଦ-ଅଶ୍ରୁ ଝରନ୍ତି ହେ । ଭକ୍ତିଭାବରେ
କେଉଁ ଭକ୍ତେ ଗାବନ୍ତି ହେ । ଭାବେ ଭଙ୍ଗିମା ହୋଇ କେହୁ ନାଚନ୍ତି
ହେ । ଭାଡ଼ ଭିତରୁ ବାହାର ହୋଇ ଭବଭୟକୁ ଦୂରେ ପକାଇ
କେ ଭକ୍ତ-ବନ୍ଧୁ କରୁଣାସିନ୍ଧୁ ଶୋଭା ଭାବନ୍ତି ହେ । ୨୧ । ଏହୁ ମତରେ
କେ କେତେଠାରେ ନାନାଭାବରେ ଦର୍ଶନ କରେ କେ ଦଣ୍ଡବତ କେ
ପରିକ୍ରମା କରନ୍ତି ତହିଁ ହେ । କେହୁ କହୁଲେ ନେତ୍ରକମଳେ ନେତ୍ର
ନବେଣୀ ମୁଖକମଳେ ଅପଲକରେ ଚନ୍ଦ୍ରପ୍ରତିମା ପଶ୍ଚେ ରହୁ
ହେ । ଅତି ବଳବନ୍ତ କେ ପଶି ଗହଳେ ହେ । ରଥ ଛୁଇଁ ବିଶ୍ରାମ
କରନ୍ତି ଗଲେ ହେ । ମହାପାତକମାନଙ୍କୁ ନାଶି ମହାଆନନ୍ଦ ସୁଖରେ
ତୋଷି ହୋଇ ପରମପଦ ପଦବୀ[୮] ପାଇବା ଛଳେ ହେ । ୨୨ । କେ
ନିଜ ପ୍ରାଣପ୍ରିୟାକୁ ସଙ୍ଗେ ଘେନି ଦର୍ଶନ କରନ୍ତି ରଙ୍ଗେ କରି ନବେଣୀ
ଉତ୍ତମଅଙ୍ଗେ[୯] ବୋଲେ ଯୁବତୀ ହେ । କେ ବଳଭଦ୍ର କେ ଜଗନ୍ନାଥ
କେ ଭଦ୍ର ମୋତେ କୃପା ହେ ନାଥ କାହାର କେଉଁ ରଥରେ କେଉଁ
ଚଢ଼ି ବହନ୍ତି ହେ । ଏହା ଶୁଣି ନାୟକ ବୋଲଇ ସଖି ରେ । ଏହୁ
ସମ୍ମୁଖେ ରହିଁ ଚାହିଁ ସୁମୁଖି ରେ । ଅତି ବିପୁଳ[୧୦] ପ୍ରଲମ୍ବ[୧୧] ହାତ
ଦେବରାଜ ଏ ଶ୍ରୀ ଜଗନ୍ନାଥ ଫୁଟିଲା ପଦ୍ମ ପ୍ରାୟେ ବିସ୍ତାର ଯାହାଙ୍କ

---

୧ ବିଷ୍ଣୁଙ୍କ ଗଦା । ୨ ଚକ୍ର । ୩ ବିଷ୍ଣୁଙ୍କ ଶଙ୍ଖ । ୪ ଶୁକ୍ଳ ।
୫ ଲୋକମାନଙ୍କ । ୬ କଳ୍ପବୃକ୍ଷ । ୭ ସମୂହକୁ । ୮ ମୁକ୍ତିପଥ ।
୯ ମସ୍ତକରେ । ୧୦ ମୋଟ । ୧୧ ଲମ୍ବ ।

ଅକ୍ଷି ରେ । ୨୩ । ମର୍କତମଣି ଦର୍ପଣ ଜିଣି ଶ୍ରୀମୁଖ ଦେଖ ଦେଖ
ଚମ୍ପଣି ମକରାକୃତି କୁଣ୍ଡଳ ଝଟକଇ ଗଣ୍ଡରେ ଯେ । ଶିରେ ସପତ-
ଶିଖା ମୁକୁଟ ବରକେଦାର ସଙ୍ଗେ ସୁଘଟ ଅବଲୋକନ୍ତେ ଅଶେଷ କଷ୍ଟ
ସନ୍ତାପ ଖଣ୍ଡେ ଗୋ । ଦେଖ ଦେଖ ସୁରଙ୍ଗ ଅଧର ଛବ ଗୋ । ଝର
କଚଇ ବନ୍ଧୁ ବାନ୍ଧୁଲୀ ରବ ଗୋ । ଅମୂଲ୍ୟ ରତ୍ନପଦକ ମାଳ ବଗଜିବାରୁ
ଶ୍ରୀବକ୍ଷସ୍ଥଳ ଯେଉଁ ଭୃଗୁପାଦି ଭଜିଲେ ବଡ଼ ବବେକ କବ ଗୋ ।୨୪।
ଯତ୍ନ ରସିକ ନାଗରବର ନାଗରୀ ନାରୀ ଧୈର୍ଯ୍ୟହର ଶ୍ରୀ ନନ୍ଦ-
ଘୋଷ ରଥରଥୀଏ ରଥାଙ୍ଗ ଧର୧ ଗୋ । ଏହାଙ୍କୁ ଏବେ ଦର୍ଶନ କର
କଉ ଅଶେଷ ଦୁରିତ ହର ଶୁଣି ସୁନ୍ଦରୀ ଶିରେ ସଖୀରେ ଯୋଡ଼ିଲା
କର ଯେ । ପୁଣି ନେଇ ଦେଖାଇ ସୀରପାଣିଙ୍କ୨ ହେ । ମହାପ୍ରବଳ
ମର୍ଦ୍ଦନ ହଠାଣିଙ୍କ ହେ । ଶରଦପର୍ବଶର୍ବରୀପତି୩ ଗର୍ବ ଜନଇ
ଶ୍ରୀମୁଖ ଜ୍ୟୋତି ବଳଭଦ୍ର ଏ ରେବତୀପତି ପ୍ରାଣରମଣି ହେ । ୨୫ ।
କୁନ୍ଦସୁନ୍ଦର ଚନ୍ଦ୍ରମାକର କମ୍ବୁ ଗୋକ୍ଷୀର ହାର ତୁଷାର୪ ଡିଣ୍ଡିର୫ ଝର
କରେ ଶ୍ରୀଅଙ୍ଗ ଶୋଭା ସୁରଙ୍ଗ ହେ । ରେବତୀସୁତା୬ ପ୍ରିୟ ଏ ଯନ୍ତୁ ।
ଅରୁଣ୭ ନେତ୍ର ଅରୁଣ୮ ତନ୍ତୁ ଅରୁଣ ମହାଅରୁଣ ପଦ୍ମ୯ ପ୍ରାୟେ
ସୁରଙ୍ଗ ହେ । ଶିରେ ସପତ ଫଣୀ ମଣି ବିରାଜେ ଗୋ । ଶିବ ବ୍ରହ୍ମା
ସହିତେ ଏହାଙ୍କୁ ଭଜେ ଗୋ । ଅନନ୍ତ ଏହାଙ୍କର ମହିମା ଅନନ୍ତ
କୋଟି ବ୍ରହ୍ମାଣ୍ଡ ସୀମା ଅଣ୍ଟୁ ସମାନ କର ବହନ୍ତି ଅପଣା ତେଜେ
ଗୋ । ୨୬ । ଦେଖ ସୁଭଦ୍ରା ଭଦ୍ରଦାୟିନୀ୧୦ ଭକ୍ତବତ୍ସଳା ଭୟଭଞ୍ଜନୀ
ହସିଲା ହେମଶତପତ୍ରକୁ ହାସେ ଶ୍ରୀମୁଖ ଗୋ । ଅବଲୋକନ କରବା
ମାତ୍ରେ ଅଶେଷ ଦୁଃଖ ନ ରହେ ଗାତ୍ରେ ପରମାନନ୍ଦ ହୋଇ ବହଇ
ପରମ ସୁଖ ଗୋ । କର ସୁଦରଶନ ସୁହରଶନ ଗୋ । କୋଟି ତପନ
କରେ କର୧୧ ଶୋଭନ ଗୋ ।୨୭ମନ୍ତ୍ର କନ୍ଦ୍ର ସୁଅନୁରାଗେ ଅନନ୍ଦେ

୧ ଚକ୍ରଧର । ୨ ବଳଭଦ୍ର । ୩ ଶରତ୍ ପୂର୍ଣ୍ଣଚନ୍ଦ୍ର । ୪ କାକର ।
୫ ଫେଣ ୬ ରେବତୀ । ୭ ଈଷତ୍ ଲାଲବର୍ଣ୍ଣ । ୮ ରକ୍ତବର୍ଣ୍ଣ ।
୯ ସୂର୍ଯ୍ୟଙ୍କ ହସ୍ତରେ ଥିବା ରକ୍ତପଦ୍ମ । ୧୦ ମଙ୍ଗଳଦାୟିନୀ । ୧୧ କିରଣ ।

ଅଷ୍ଟ ପଲ୍ଲିକି ଯୋଗେ ବୋଲେ ଶ୍ରୀ ନନ୍ଦଘୋଷରେ ଏହୁ ଗରୁଡ଼ ଚହ୍ନ ଗୋ । ୨୭ । ତାଳଧ୍ୱଜରେ ବଡ଼ଠାକୁରେ ଦେବୀ ବଜ୍ରସ୍ତେ ପଦ୍ମ-ଅଙ୍କରେ ପତିତଜନମାନଙ୍କୁ ଉଦ୍ଧରିବାକୁ ପାରେ ଗୋ । ପାତଜାତକ କୁସୁମ ଶିଖରେ ବସି ସ୍ତୁତି କରନ୍ତି ସୁରେ ଏହି ସମୟେ ଜଣାଏ ଦୀନକୃଷ୍ଣ ସ୍ୱାମୀରେ ହେ । ଅହେ ଅର୍ଦ୍ଧଭଞ୍ଜନ କମଳାନାଭ ହେ । କୃପାସମୁଦ୍ର ଦୀନଜନଙ୍କ ସାହା ହେ । ଯହିଁ ଥିଲେ ମୁଁ ତୁମ୍ଭ ଶରଣ ରଖ ନ ରଖ ପ୍ରଭୁ ତା ଜାଣ ଜଣାଉଅଛୁ—ଅବଶ୍ୟ ମୋତେ କରିବ ଅଭୟ ହେ । ୨୮ । ଅଜାତପକ୍ଷ ପକ୍ଷବ୧ ରଥ୨ ଗୋତ୍ର୩ ଦଗ୍ରସ୍ତେ କୃତ ବ୍ୟର୍ଥ ବିଘାତ ପୋତ ପରାୟେ ପ୍ରଭୁ ନାହିଁ ମୋ ଗତି ହେ । କେବଳ ଏହୁ ଅଭିମାନହିଁ ମନେ ଘେନଛୁ ହେ ସବଗ୍ରାହୁ ତୁମ୍ଭେ କରୁଣା-କରୁଣାଳୟ୪ ଅଗତିଗତି ହେ । ଅଶା ବିଶ୍ରାମ ନାମ ଯେଉଁ ଭରସା ହେ । ତାହା କହିବ କେବେ କେତେ ମୋ ସ୍ୱଷା ହେ । ହେ ଅନ୍ତର୍ଯ୍ୟାମି ପ୍ରଭୁ ତା ଜାଣ ଜାଣିଲେ ସର୍ବା ଏଡ଼େ କଷଣ ଏବେ ଏ ରଥଯାତ୍ରା ଉତ୍ସବେ ହେଉ ସୁଦର୍ଶ ହେ ॥ ଅହେ ବାଣୀ-ଭୟବାରଣ ବାରେହେଁ ମାତ୍ର କିର କାରଣ ଅଧମ-ଉଦ୍ଧାରଣ ଶରଣାଗତ ବତ୍ସଳ ହେ । ବରୁଣସୁତା ହୃଦଭୂଷଣ୫ ଅରୁଣସୁତା୬ ଛବି ଦୂଷଣ ତରୁଣ୭ କାଳ ସନ୍ଧ୍ୟା ଶ୍ୟାମଳ ସୁନ୍ଦରଶୀଳ ହେ । ପ୍ରଭୁ ନାହିଁ ମୋହର କାହିଁ ଦୃଢ଼ ହେ । ବସ୍ତୁଲେ ମୁ ସବୁ ପ୍ରକାରେ ମୂଢ଼ ହେ । ମହାଘୋର ଏ ସଂସାରସିନ୍ଧୁ ଏଥି ଉଦ୍ଧର ହେ ଦୀନବନ୍ଧୁ ଉନ୍ନିଦ୍ର ଇନ୍ଦୀବରାକ୍ଷ୮ ନନ୍ଦଘୋଷ ଅରୂଢ଼ ହେ । ୩୦ ।



---

୧ ନୂତନପକ୍ଷ । ୨ ଦେହ । ୩ ପର୍ବତ । ୪ କୃପାସମୁଦ୍ର । ୫ ଲକ୍ଷ୍ମୀଙ୍କ ହୃଦହାର । ୬ ଯମୁନା, ଏହାର ଜଳ କୃଷ୍ଣବର୍ଣ୍ଣ । ୭ ନୂତନ । ୮ ବିକଚ ପଦ୍ମାକ୍ଷୀ ।

## ଦଶମ ଛାନ୍ଦ ।

### ରାଗ ବଙ୍ଗଳଶ୍ରୀ ।

ଏଥୁ ଅନନ୍ତ ଜଗନ୍ନାଥ ଦେବରାଜ ରଥ ଗଜ ଅଶ୍ୱ ନର । ଅତି ସମ୍ଭ୍ରମେ୧ ଆନନ୍ଦଭର ହୋଇ କଲେ ପ୍ରଭୁ ଅଭିସାର୨ । ୧ । ଆଗେ ହଳଭଦ୍ର ପଛେ ବଳଭଦ୍ର ଅନୁଜା୩ ମଧ୍ୟରେ ଦେବୀ । ଖଦୀ ଆଲଟ ଚାମର ପଙ୍ଖା ଧରି ପାଶେ ଲୋକେ ଛନ୍ତି ସେବି । ୨ । ଘଣ୍ଟା ମର୍ଦ୍ଦଳ ମହୁରୀ ଶଙ୍ଖ ଭେରୀ ଦୋଶଲୀ କାହାଳ ବାଜେ । ଦରିଦ୍ର ପତିତ ଗଡ଼ ତାଡ଼ିବାକୁ ନୀଳଗିରିନାଥ ସାଜେ । ୩ । ମହିମା ମହିମା ଡାକନ୍ତି ଗରିମା ଶିଙ୍ଘ ଘଣ୍ଟ ଅଗ୍ରମଦେ । ଜୟ ଜୟ ଗୋଳ ଅତିହିଁ ପ୍ରବଳ ସମୁଦ୍ର ମନ୍ଥନ ପ୍ରାଏ । ୪ । ଅଗୁରୁ ଧୂପ ଅମ୍ବରେ ପ୍ରକଟ ହୁଅଇ କୁସୁମ ବୃଷ୍ଟି । ଆଗେ ଅପସରୀ ନୃତ୍ୟ ଗୀତ କରି ପ୍ରକାଶନ୍ତି ସୁଖ-ସୃଷ୍ଟି । ୫ । ଚନ୍ଦ୍ରବଦନୀ ଗଜେନ୍ଦ୍ରଗମନୀ ଶିଶୁଗାଇନ୍ଦ ମଧ୍ୟମାଏ । ମନ୍ଦହାସିନୀ ମଦପିକଭାଷିଣୀ ମୁକୁନ୍ଦଦଶନୀ ରମା । ୬ । ନୀଳ କୁଞ୍ଚିଳ୫ ପ୍ରଳମ୍ବିତ୬ କୁନ୍ତଳେ୭ କେ ରଚନ୍ତି ଲୋଟଣି ଜୁଡ଼ା । ଗର୍ଭମୂଳେ ଖୋସି କେତକୀପାଖୁଡ଼ା କରୁଅଛନ୍ତି ପରବୁଡ଼ା । ୭ । କାହା ବେଣୀ କାମ-ଚାପଠିକ୍୮ ଝିଣି ପାଡ଼ୁଅଛି ଦିବ୍ୟ ଶୋଭା । ଝିଲମିଲି ଚନ୍ଦ୍ରରଶ୍ମି ଝଲ-କନ୍ତେ ନାଗର ନୟନ ଲୋଭା । ୮ । ଭୁରୁଭଙ୍ଗିମା ନୟନ ତରଙ୍ଗିମା କରି ହସ୍ତକ ଦେଖାନ୍ତି । ତାଳ ମାନ ଘାତ ହୃଦୟ ସଙ୍ଗତେ ସୁଖ-ସମ୍ପତ୍ତି ରଖନ୍ତି । ୯ । ରଥଶ୍ରେଣୀ ଗୃହାବଳୀ ଭାଗ୍ୟବୃକ୍ଷ ନଟମ୍ବୃକ୍ଷମଣ୍ଡଳୀ । ନାନାରାଗରେ ନାନା ରଙ୍ଗ କରନ୍ତି ଝଲ ଅଙ୍ଗମାନ ତାଳି । ୧୦ । ବଡ଼ କବ ତାଂ କଡ଼ତାଳୁ୯ ପାଇବେ କେତେ ଜାଣିବ ତାହା । ଊର୍ଦ୍ଧ୍ୱ-ରେଖାମାନେ୧୦ ଅର୍ଦ୍ଧରେଖା୧୧ ହୋଇବେ ଅନାଇଲେ ମାତ୍ର ଯାହା । ୧୧

---

୧ଆଡ଼ମ୍ବରରେ । ୨ବାହାର । ୩ସାନଭଉଣୀ । ୪ଛୁଅଁନ୍ଦ ମଧ୍ୟା । ୫କୁଞ୍ଚକୁଞ୍ଚିଆ । ୬ଲମ୍ବ । ୭କେଶରେ । ୮ଅନ୍ତବେଶଷକୁ । ୯ମୂନାଭବକୁ । ୧୦ଉପସ୍ତୀମାନେ । ୧୧ତରଳିତ ହେଉ ।

କାମଙ୍କରକାଳ୧ ଯାଉରୁ ପ୍ରବଳ ଅଳପ ହାସ କଟାକ୍ଷ । କେ ସହନ୍ତା ଯେବେ ନ ଥାନ୍ତା ପ୍ରଭୁଙ୍କ ଦରଶନ ସ୍ନେହାପକ୍ଷ । ୧୨ । ନଶ୍ର ନର ନାରୀ ବାହାର ହୋଇଲେ ଦର୍ଶନ କରିବା ଅଶେଷ । ବିବିଧ ବର୍ଣ୍ଣ ଅଗ୍ରେପଣ୨ ଷସଣ୩ ନାନା ଅଳଙ୍କାର ବେଶେ । ୧୩ । ଶ୍ୱେତ ପୀତ ନୀଳ ଲୋହିତ ବସନ ପରିଧାନ କରି ଅଙ୍ଗେ । ପନ୍ତ ପନ୍ତ ହୋଇ ଗମନ୍ତି ଯୁବତୀ ସୁତ ପତି ଘେନ ସଙ୍ଗେ । ୧୪ । ଏମନ୍ତେ ପଥରେ ରଥରେ ଦେଖନ୍ତି ଜଗନ୍ନାଥ ଦେବଗଣେ । ଆନନ୍ଦରେ କଉତୁକି କରନ୍ତି ଅଙ୍ଗ ଆଭରଣ ଲାଗେ । ୧୫ । ନୟନକମଳ ନୀଳୋତ୍ପଳମାଳ ମଣ୍ଡି ପ୍ରଭୁଙ୍କ ଶ୍ରୀଅଙ୍ଗେ । ଆନନ୍ଦେ ଅଶ୍ରୁ ପୁଲକଭରେ ସ୍ତୁତି କରନ୍ତି ବିବିଧ ରଙ୍ଗେ । ୧୬ । ଆହେ ଅମୃତଦାନ ସୁଖଦାୟକ ଅନନ୍ତଅଙ୍କ-ଶାୟୀ୪ । ଆପଣା ଉତ୍ସବ ଅନ୍ତର କାଳରେ ଚଞ୍ଚଳ ଅନ୍ତର କର । ୧୭ । ଅଳପ ହସି ଶିରେ କର ନବେଣୀ ଜଣାଏ କେଉଁ ନାୟିକା । ଏଡ଼େ ବରଷା ସମୟେ ପ୍ରଭୁମାନେ ପ୍ରିୟଙ୍କୁ କରନ୍ତି ଏକା । ୧୮ । କେ ବୋଲେ ତାଙ୍କୁ କହି ଅଛି ନ ଥିବେ କହିଲେ ଆସନ୍ତେ କାହୁଁ । କେ ବୋଲେ ନଇଲେ ନ ଚଳଇ କାର୍ଯ୍ୟ ଜଗତ ପାଳନ୍ତି ଯହୁଁ । ୧୯ । କେ ବୋଲେ ଏହାଙ୍କର ନୁହେ ଅଟଇ ଠାକୁରାଣୀଙ୍କର ଦୋଷ । ବାହୁପ୍ରାଣେ ଛନ୍ଦି ବନ୍ଦୀ କରିଥିଲେ ଏ ତାଙ୍କୁ କରନ୍ତେ ହସ । ୨୦ । ଏହଙ୍କ ଦୀନବନ୍ଧୁ୫ ନାମ ପ୍ରକାଶ ହୋଇଛି ତିନି ଲୋକରେ । ଏବେହେଁ ଅନାଥ ଚକ୍ର ୬ଅରବିନ୍ଦ୭ ପ୍ରକାଶି ଅଛନ୍ତି କରେ୮ । ୨୧ । ଅମୃତଆଧାର୯ ସବୁ ଲୋକଙ୍କର ନୟନର ଅଳଙ୍କାର । ମହା-

---

୧କନ୍ଦର୍ପଖଡ୍ଗ । ୨କେତେ ପୁରୁଷ ନାନାପ୍ରକାର ଲୁଗା ପିନ୍ଧି ଏବଂ ୩କେତେକ ମୁକ୍ତଦେହରେ ବା ଲଙ୍କାଳିନ ବେଶ ଧରି । ୪ଶେଷ-ଦେବଙ୍କ କୋଡ଼ଶାୟୀ । ୫ଦୀନବନ୍ଧୁ-ଜଗନ୍ନାଥ । ୬ହସ୍ତରେ ଚକ୍ର । ୭ପଦ୍ମ ଧରିଛନ୍ତି ଦିନବନ୍ଧୁ-ସୂର୍ଯ୍ୟ । ୮କିରଣଦ୍ୱାରା ଚକ୍ରବାକ ପକ୍ଷୀ-ଙ୍କ ଆନନ୍ଦିତ ଏ । ୯ଜଗନ୍ନାଥ, ମୁକ୍ତିଧାମ । ସୂର୍ଯ୍ୟକିରଣ 'ଅମୃତ' ଜଳକୁ ବହନ କରୁଥିବା ହେତୁ ସୂର୍ଯ୍ୟ ଅମୃତାଧାର ।

ଅଜନଦରେ ଘନରସଭିରେ କମଳା କରେ ବିହାର । ୨୨ । ଅଶେଷ ସୃଷ୍ଟିପାଳ ପ୍ରତିପାଳନ୍ତି ଅନନ୍ତ୨ କୋଳରେ ଥାଇ । ଚକ୍ରରଥପତି୩ କଶ୍ୟପନନ୍ଦନ୪ ଏହାଙ୍କ ରଥସ୍ଥ ବସଇ । ୨୩ । ଅତି ଅହ୍ଲାଦ କରନ୍ତୁ ସର୍ଗି ଏ ଅମୃତ କରେ ଚନ୍ଦ୍ରମା । ତାରକାମଣ୍ଡନ ତମବଖଣ୍ଡନ କମଳାଙ୍କ ସୁଖସୀମା । ୨୪ । ସର୍ଗି ଏ ବନ୍ଧୁ୫ ନନ୍ଦଘୋଷ ଉଦୟେ୬ ଯେବେ ନୃହନ୍ତେ ଉଦୟ । ଥିଲେ କହ ନାଶ ହୁଅନ୍ତା ଅଶେଷ ଅଘ- ଅନ୍ଧକାର୭ ଭୟ । ୨୫ । ଏତେ ନିର୍ମଳ ହୋଇ ଯେ ନ ଦିଶନ୍ତା ମହାଗତି ବାଟ୮ ସର୍ଗି । ଅଜନନ୍ଦଉଦଧି୯ ନ ଉଚ୍ଛୁଳ ନେତ୍ର- ଚକୋର ହୁଅନ୍ତା ସୁଖୀ । ୨୬ । ହୃଦଉଚନ୍ଦ୍ରକାନ୍ତ୧୦ କେ ଏମନ୍ତ କନ୍ଦ ହରଷ କରନ୍ତା । କରକମଳ୧୧ କାହିଁପାଇଁ କ ଅଉ ମୁଦ୍ରିତ ଦଶା ଧରନ୍ତା୧୨ । ୨୭ । ଶୋକ-ରଥାଙ୍ଗ୧୩ ଅଙ୍ଗସଙ୍ଗ ଛାଡ଼ନ୍ତି ନାହିଁରେ ପ୍ରାଣସଜନ । ଏତେକ କରବାକୁ ସମ ହୋଇଲା ଭଲ ଗଣ୍ଡିଚ ରଜନୀ । ୨୮ । ଚିନ୍ତନ୍ତ୍ର୧୪ ଶୀତଭ୍ରାନ୍ତ ଉପଲ୧୫ ଦ୍ରବେ କ ଏ ଦରଶନଂବାହାରେ । ଏହା କହ କମଳନେତ୍ରୀ କଳାପ୧୬ ତୋଷ ନୁହେ ଯେ ଯାହାଙ୍କେ । ୨୯ । କେ ବୋଲେ ଅଷାଢ଼ମାସ ପରବେଶ

---

୧ ଜଗନ୍ନାଥଙ୍କଠାରେ ଲକ୍ଷ୍ମୀ କହନ୍ତି ରସରେ କ୍ରୀଡ଼ା କରନ୍ତି । ସୂର୍ଯ୍ୟ ଜଳପୂର୍ଣ୍ଣ ପଦ୍ମବନରେ କ୍ରୀଡ଼ା କରନ୍ତି । ୨ ଶେଷଦେବ ଏବଂ ଅକାଶ । ୩ଚକ୍ରରଥ ଗନ୍ଧବହପତି ଏବଂ୪ ଗରୁଡ଼ ଜଗନ୍ନାଥଙ୍କ ରଥରେ ବସିଥାନ୍ତି । ସୂର୍ଯ୍ୟ ଚକ୍ରିତ ରଥର ସ୍ୱାମୀ ଅଟନ୍ତି ଏବଂ ଏହାଙ୍କ ରଥରେ ଅରୁଣ ବସିଥାନ୍ତି । ୫ଚନ୍ଦ୍ର ଏବଂ ବନ୍ଧୁ । ୬ନନ୍ଦଘୋଷ ରଥ, ଉଦୟ-ପର୍ବତ, ହେଲା ତହିଁରେ ୭ପାପ- ଅନ୍ଧାରର । ୮ମୁକ୍ତିପଥ । ୯ଅନନ୍ଦ ସମୁଦ୍ର । ୧୦ହୃଦୟ- କୁମୁଦକୁ । ୧୧ହସ୍ତପଦ୍ମ । ୧୨ହାତଯୋଡ଼ି ସମସ୍ତେ ସ୍ତୁତି ବନ୍ଦନାଦି କରନ୍ତେ । ୧୩ଶୋକ-ଚକ୍ରବାକ । ୧୪ଦେହ । ୧୫ଚନ୍ଦ୍ରକାନ୍ତ ପଥର । ୧୬ପଦ୍ମନୟନା ସ୍ତ୍ରୀମାନେ ।

ଛାଣି ଶ୍ୟାମ ଘନାଘନ୧ । ଜଗତତାପ ଖଣ୍ଡିବାକୁଁ ମଣ୍ଡିଲେ ଗ୍ରୀନାଦ-
ଘୋଷ ଗଗନ । ୩୦ । ଅମୃତ ବୃଷ୍ଟି କର ସୃଷ୍ଟି ଯାକ ଏ ରକ୍ଷା କରବେ
ଟୋ ସଖି । ସୁଖୀ ହୋଇ ନୃତ୍ୟ କରନ୍ତୁ ଦେଖ ତ ନୃତ୍ୟକାରୀ ବାର-
ଣିଖୀ୨ । ୩୧ । ଶୁଦ୍ଧ ଗାର ହାର୩ ବଲାକା ନିକର୪ ଧଟିତ ଅମ୍ବର୫
ଶୋଭା । ଦଏଣା ଲାଗଣୀ ଚମ୍ପାମାଳ ଶ୍ରେଣୀ ଇନ୍ଦ୍ର ଶରାସନ୬ ପ୍ରଖ୍ୟ
। ୩୨ । ମହାଶମ୍ଭରେ୭ ନାଦଘୋଷ ଅମ୍ବରେ୮ ଯେଣୁ ଏ ଘନ
ଘୋଟିଲା । ପ୍ରତି ଅଙ୍ଗ ଦେଖ ପୁଲକ୯ କଦମ୍ବ କଦମ୍ବ୧୦ ଭେଣୁଫୁଲ
। ୩୩ । ରଙ୍ଗବାସନୀ୧୧ ଇନ୍ଦ୍ରଗୋପ୧୨ ଅବନୀ ଉଦେ କରିବାକୁ ଏହି ।
କେବଳ ଏକାକୀ ଏ ମାତ୍ର ସୁତେଁ ନ ଦେଖାଗଲା ଗୋ ସହି । ୩୪ ।
ଏତେ ଘନକାଳେ ଚପଳା୧୩ ନ ଖେଳେ ଏହୁ କଥା ଅଚମ୍ବିତ । କେ
ବୋଲେ ଷ୍ଣୀରେ ଧୃତ ଥିଲା ଧ୍ୟାଏ ହୋଇଥିବେ ଅନ୍ତର୍ଗତ । ୩୫ ।
ଶ୍ରୁତିରେ୧୪ ସ୍ୱର ତରୁରେ ଛନ୍ଦକର୧୫ ଅଙ୍ଗରେ ଯେମନ୍ତ ଛଇ ।
ହନା ହେତୁରେ ଏ ପ୍ରକାଶ ନହନ୍ତି ଯେ ଯାହା ସ୍ଥାନରେ ଥାଇ । ୩୬ ।
ହେନ୍ତୁ ଯାମିନୀ କାନ୍ତକୁ କାମିନୀ କାମିନୀକ କାନ୍ତ୧୬ କାନ୍ତି୧୭ ଅଙ୍ଗକୁ
ଭୂଷଣ ଭୂଷଣକୁ ଅଙ୍ଗ ପରେଷ୍ଟରେ ଏ ଶ୍ରୀମନ୍ତ୧୮ । ୩୭ । ଏହାଙ୍କ ଅଙ୍ଗ
ଯାକତ ତାହାଙ୍କର ନାମରେ ହୋଇଛନ୍ତି ଛଇ । ଅନ୍ତର୍ଗତ ହେ-
ଲେହେଁ ଯେମନ୍ତ ରହୁକୁ ଶୋଭା କରଇ । ୩୮ । ଅଗ ତାଙ୍କ
ନାମ ଥିଲେ ଅଭଗମ୧୯ ଶୁଭଇ ଏହାଙ୍କ ନାମ । ଏହୁ ଯେନ ସେ
ଏହାଙ୍କର ମଣ୍ଡନ ଏ ତାହାଙ୍କ ସୁଖଧାମ । ୩୯ । ଏବେଁ ଅଟେରକ

---

୧ବର୍ଷିଲା ମେଘ । ୨ମୟୂର । ୩ମୁକ୍ତାହାର । ୪ବକପଙ୍କ୍ତି ।
୫ପୀତାମ୍ବର ଏବଂ ଦିଗ ଓ ଆକାଶ । ୬ଇନ୍ଦ୍ରଧନୁ । ୭ମଙ୍ଗଳ
ଯୁକ୍ତରେ । ୮ଆକାଶରେ ୯ରୋମାଞ୍ଚ । ୧୦ କଦମ୍ବଫୁଲ ସମୂହ ।
୧୧ରଙ୍ଗବସ୍ତ୍ର ପିନ୍ଧିଥିବା ସ୍ତ୍ରୀମାନେ ବା ସୁଭଦ୍ରା । ୧୨ବର୍ଷାକାଳୀନ
ଲୋହିତବର୍ଣ୍ଣ ପୋକ ବିଶେଷ । ୧୩ବିଦ୍ୟୁତ ଏବଂ ଲକ୍ଷ୍ମୀ ।
୧୪ବେଦରେ । ୧୫ଅଗ୍ନି । ୧୬ମନୋହର । ୧୭ସ୍ୱାମୀ ୧୮ଶୋଭାଯୁକ୍ତ ।
୧୯ ସୁନ୍ଦର ।

ଏମନ୍ତ କହୁବାରୁ ଚାଲନ୍ତି ଯେ ପଦ୍ମଆଖି । ଚଳନ୍ତି ଚହୁଁଙ୍କ କର ମତ୍ତଗତି ହୋଇବାକୁ ଲୋକେ ସୁଖୀ । ୪୦ । କେ ବୋଲେ ଧ୍ୱଜି ପ୍ରଭୁପଣ ଲକ୍ଷଣ ଏହୁଠାରେ ଅଛୁ ଦେଖ । ବେଳଟାଇ ଏକାବେଳେ ଚଳୁଥିଲେ ପାଉଥାନ୍ତି ଲୋକେ ସୁଖ ॥ ଧନ୍ୟ ଧନ୍ୟ ଘନସାର୧ ଅଙ୍ଗ ଧନ୍ୟ ବରୁଣନନ୍ଦନୀ୨ ପ୍ରିୟ । ଭଲା ଭଲା ଘନସାର୩ ତନୁ ଭଲ ବରୁଣନନ୍ଦନୀ୪ ପ୍ରିୟ ।୪୨। କେ ବୋଲେ ସଖି ଏ ଯାଉଛ ସାକ୍ଷାତେ ସ୍ୱର୍ଗପୁର ପ୍ରାୟେ ଦିଶେ । ଦେଖ ଚିତ୍ରରଥ୫ ଗନ୍ଧର୍ବ ଗାୟକ ପ୍ରାୟେ ଦେବଶକ୍ର୬ ଙ୍କ ସେ ।୪୩। ବ୍ରହ୍ମାଦି ଦେବତାମାନେ ପକ୍ଷୋଅଗ୍ନା ଅଛନ୍ତି ଗୁରୁପାଶରେ । ଦୁବ୭ ଚନ୍ଦନ ବନ୍ଦଣା ସ୍ନେହ କର ସେବା କରନ୍ତି ତୋଷରେ ।୪୪। କେ ବୋଲେ ସଖି ଏ ଯାତ୍ରା ସ୍ୱିକୃପ୍ରାୟେ ପ୍ରତେ ହେଉଅଛୁ ମୋତେ । ଅବଶ୍ରାମ ହୋଇ ଗ୍ରୁମର ଲହରୀ କଦମ୍ବ୮ ଦିଶୁଛୁ କେବେତ ।୪୫। ସିନ୍ଧୁର୯ ମଙ୍କର ଅଶ୍ୱିଣିଶୁମାର ଏମାନେ ଛନ୍ତି ବହୁତ । କୋଳାହଳ ମହାଗର୍ଜନ ଏହାର ମୂହୁର୍ତ୍ତେ ରହୁ ନାହିଁ ତ ।୪୬। ରଥ ବୋଇତମାନେ ଏଥେ ସଯିରେ ଚଳନ୍ତି କେମନ୍ତ ହୋଇ ? ପାଠ ପଢନ୍ତି ନେତ ନାନା ଅମ୍ବର୧୦ ଅଛିଲ ଭ୍ରବକୁ ପାଇ ।୪୭। ମହତ ସାଧବ ପରପ୍ରେ ମାଧବ ମହାଶୋଭ-ବନ ଦିଶେ । ମହାସମ୍ଭବରେ ଚଉବର୍ଗ ଯେନ ସ୍ୱେତଦ୍ୱୀପରୁ କ ଅଟେ ।୪୮। ଭାଇ ବଳରାମ ସୁଭଦ୍ରା ଭଗିନୀ ଅଣେ ଅଛନ୍ତି ଏ ସଙ୍ଗେ ଅତି ମନୋହର ଅଳଙ୍କାର ଦେଖ ମଣ୍ଡି ଯେ ଅଛନ୍ତି ଅଙ୍ଗେ ।୪୯। ଅମ୍ବୁଦ୧୧ ଚୁମ୍ବିଲା ଚନ୍ଦ୍ରଶିରଗିରି୧୨ ନିତମ୍ବ୧୩ ପ୍ରାୟେ ସୁନ୍ଦର କାମପାଳ୧୪ ବାମ-କନ୍ଦରେ୧୫ ଦେଖ ରାମକୃଷ୍ଣ ବାଧ ସାର ।୫୦।

---

୧ କର୍ପୂର । ୨ କାଦମ୍ବରୀ ମଦ୍ୟ । ୩ ନବଜଳ ନୀଳମେଘ । ୪ ଲକ୍ଷ୍ମୀ । ୫ ଗନ୍ଧର୍ବ ଛନ୍ଦୋଷ ଏବଂ ଚିହ୍ନିତ ରଥ । ୬ ଇନ୍ଦ୍ର ଏବଂ ଜଗନ୍ନାଥ । ୭ ମାଳ୍ୟ । ୮ ସମୁଦ୍ର । ୯ ହସ୍ତୀ । ୧୦ ବସ୍ତ୍ର । ୧୧ ମେଘ । ୧୨ କୈଳାସ ପର୍ବତ । ୧୩ ପର୍ବତର ପାର୍ଶ୍ୱଭାଗ । ୧୪ ବଳରାମ । ୧୫ ବପରୀତ ପାଖରେ ।

ସ୍ଥିତକମଳ୧ କୋଳରେ ଭୃଙ୍ଗମେଳ ପ୍ରାୟେ ନୟନ ଆକୃତି । ତରୁଣ-
ଚନ୍ଦ୍ରମା୨ ଶ୍ବେତବସ୍ତ୍ର ଯେହ୍ନେ ଏବେଦ୍ଧେ ପଟ୍ଟସୂତ୍ର ମାତି । ୫୧ । ରେବତୀ
ଭୂତ ତନ୍ତ୍ରକାରକଙ୍କ୩ କରେ ଶୋଭିତ ହଳ ମୂଷଳ । କ୍ଷୀରସମୁଦ୍ରରେ
କଲ୍ଲୋଳ ପରାୟେ ଶ୍ରୀଅଙ୍ଗେ ଅନେକ ମାଳ ।୫୨। ବିନ୍ଧ୍ୟବନ୪ ଦନ୍ତୀ
ଅନ୍ତକ୫ ଏହୁଁ ପ୍ରାଣୀ ଦୃଢ଼ ପ୍ରସଙ୍ଗରେ । ଧର୍ମସଙ୍ଗବର୍ତ୍ତିଣୀ୬
ଆକର୍ଷଣ ଏହୁ କଲେ ଏକଣରେ । ୫୩ । ଏ ବେନି ଯାଇଙ୍କ ମହିମା
ଅନେ୍ୟାଦ୍ୟ ଏହା କେ କହିବ ସଖି । ସହସ୍ର ମୁଖେ ସହସ୍ରମୁଖ୭
ଯାହା ଶେଷ ନ କରିବେ ଲେଖି । ୫୪ । ଏମନ୍ତେ କେ କେତେ
ପ୍ରକାରେ କହନ୍ତେ ବଳଦେବ ଦେବରାୟେ । ଭକ୍ତଜନ ଯେଣି ବନ-
ଗଣ୍ଡି ବାଟ, ଜବରେ କଲେ ବିଜୟେ । ୫୫ । ଅମୂଲ୍ୟ ଅଙ୍ଗୁ ଅମୂଲ୍ୟ
ଅଭରଣ ଉଲାଗି୮ ହୋଇ ଭୁଇଁତେ । ଦୁଇପ୍ରହର ଧୂପସଜ ଉଲାଗି
ହୁଅନ୍ତି ଭକ୍ତଙ୍କ ହିତେ । ୫୬ । ଫୁଲସୁରେହ୍ଣା ଫୁଲରେ ବନ୍ଧ ଗୁନ୍ଧା
ଫୁଲେ ହୁଅନ୍ତି ସୁବେଶ । ପାଇଁ ପର୍ବିଣୀରେ ଫୁଲ ଥାଇ ଭକ୍ତମାନଙ୍କ
ହୃଦୟଦେଶ । ୫୭ । ବେଷ୍ଟ ବଡ଼ାଇ କର୍ପୂର ଲାଗି ହୋଇ ଧୀରେ
ଦେଖ ମନୋହରେ । ନାନାପ୍ରକାରେ ଶୀତଳଭୋଗ ନେଇ ବାଡ଼ନ୍ତି
ମହାସ୍ନାଅରେ । ୫୮ । ଖଣ୍ଡିନଡ଼ିଅରେ ମଣ୍ଡା ହୋଇଥାଇ ଖଣ୍ଡି ଖଣ୍ଡି
ହୋଇ ଅହା । ଅଙ୍କୁର୯ ମୁଗମାନଙ୍କରେ ପଣ୍ଡ୍ୟ ହୋଇଥାଇ
ମନୋହରା । ୪୯ । ରସଆଳସ୍ୟ ରସାଳ୧୦ ରମ୍ଭାଫଳ୧୧ ସୁବର୍ଣ୍ଣ ବର୍ଣ୍ଣିରୁ
ଗୋଗ । ଚନ୍ଦ୍ରରୁ ଉଜ୍ଜ୍ୱଳ ଚନ୍ଦ୍ର ହୋଇ ମେଳ ମଣ୍ଡା କୋଷ ଅଭି
ଭୋଗ ।୬୦। ଗଙ୍ଗାବାଣ ପଦ୍ମଃପେଟ୍ଟା୧୨ ଅତିଶୟ ପକ୍ୱ ସପୁରୀ ପନସ ।
ଅନେକ ମତେ ଅମୃତକୁଣ୍ଡ ହୁଏ ପଡ଼ି କୃଷ୍ଣଚନ୍ଦ୍ର୧୩ ରସ । ୬୧ ।
ଶରାଶରକ ସର ଆଦି ଅନେକ ସୁବାସକଳ ସହିତେ । ଶ୍ରୀନନ୍ଦିଘୋଷ

---

୧ ଶୁକ୍ଳପକ୍ଷ । ୨ ଲକ୍ଷ୍ମୀ । ୩ ବଳରାମ । ୪ କୃଷ୍ଣ ବିଦ୍ବେଷୀ ନୃପତି ବିଶେଷ । ୫ ହନ୍ତା । ୬ ଯମୁନା । ୭ ସର୍ପରାଜ । ୮ ଉତାରିବା । ୯ ଗଛା । ୧୦ ଅମ୍ବ । ୧୧ ପାଚିଲାକଦଳ । ୧୨ ନାଇକେଳ ବିଶେଷ । ୧୩ ମରିଚ ଓ କର୍ପୂର ।

ରଥୀ ଶ୍ରେଷ୍ଠ ଙ୍କରନ୍ତି ମୁଁ ତାହା କହୁବ କେତେ । ୬୨ । ମୃଣୋନ୍ତେ
ଶେଷେ ଅଚମନ କହାଇ ଶ୍ରୀମୁଖ ଯୋଡ଼ି ସ୍ତବାସ୍ତ । ବଡ଼ିଥିଲାଗିରେ
ଭକ୍ତ କର ସବୁ ଲୋକଙ୍କୁ କରନ୍ତି ତୋଷ । ୬୩ । ଜଗନ୍ନାଥଦେବ
ନୃପତି ଜାଣନ୍ତି ପ୍ରବାସ କରିବା ସୁଖ । ଭୃତ୍ୟବତ୍ସଳ ଏହୁ ହେନି
ବୋଲନ୍ତି ଜାଣନ୍ତି ଲୋକଙ୍କ ଦୁଃଖ । ୬୪ । ସ୍ତବ ଭଜିଲେ ସ୍ତବ-
ଛାମ୍ବି ଏମନ୍ତ ହୁଅନ୍ତି ଅତି ଅଧୀନ । ଦେବା କଥାରେ ସଂଶୟ ନାହିଁ
ଚତୁର୍ବର୍ଗହୁଁ ଦିଅନ୍ତି ଜନ । ୬୫ । ବଡ଼ଲୋକଙ୍କପଣେ ଯେତେ ପୁର-
ଶତେ ସାନଲୋକ ପକ୍ଷପାତି । ଦାସ୍ୟାଶ୍ରୀଳ ଜୀବ ହେଲେ ଅବା କହନ୍ତି
ଦୀନବାନ୍ଧବ ବୋଲାନ୍ତି । ୬୬ । ଶରଣରକ୍ଷଣ ଅର୍ଥେ ପ୍ରହରଣ
ଧର ହୋଇ ଉର୍ଦ୍ଧ୍ୱବାହା । ଅର୍ଜ୍ଜନ ପାଇ ଅପଲକ ହୋଇ ଦେଖ-
ଥାନ୍ତି ଗୃହାଁ ଗୃହାଁ । ୬୭ । ଅଧୀନତ୍ୱପଣେ ମହିମା ଏମନ୍ତ ଦୂରହୁଁ
କରନ୍ତି ଦାରୁ । ମହାପତିତଜନ ରକ୍ଷା କରନ୍ତି ଦୁଃସହ କାଳଦଣ୍ଡରୁ ।
ଏତେ ବଡ଼ ପ୍ରଭୁ ଥାଉଁ ଥାଉଁ ଦୀନକୃଷ୍ଣ ଏଡ଼େକ ମୂରୁଖ । ଅନିତ୍ୟ
ଧଂସାରେ ଦେଶରେ ପଡ଼ି ପାଉଥାଇ ମହାଦୁଃଖ । ୬୯ । ଶର୍କର
ଯେମନ୍ତ ଗଚ୍ଛମୋଳି ଛାଡ଼ି ପଦ୍ମଦଳଙ୍କ ଗନ୍ଧେ । ମକ୍ଷିକା ଦୁର୍ବାସନା
ବଶରୁ କର ଦୁର୍ବାସନା ଦ୍ରବ୍ୟ ବନ୍ଧେ । ୭୦ । ଯେଣୁ ଛାର ପାଇ
ଅନାସ୍ୱର ହୋଇ ଦୁଃଖଦ କଥା କହଇ । ଅସ୍ତୁତ୍ୟ ଲୋକଙ୍କ ନାନା
ସ୍ତୁତି କର ନମ୍ରତା କର କହଇ । ୭୧ । ଅହେ ପ୍ରଭୁ ନନ୍ଦଘୋଷ
ମହାରଥୀ ଶ୍ରୀଗୁଣ୍ଡିଚ୍ଚ କଉତୁକୀ । ଦୀନକୃଷ୍ଣ ଦାସ ଦୁଃଖ ଜଣାଇବା
ହୋଇ କ ନାହିଁ ଏତିକ । ୭୨ ।



୧ ଅସ୍ତ୍ର ।

## ଏକାଦଶ ଛନ୍ଦ । ରାଗ କଳଡ଼ା ।

ବଳଗଣ୍ଡିବାଟ ନଗରୁଁ ବିଜୟେ କୁରନ୍ତି ପ୍ରଭୁ ଧୀରେ ଧୀରେ । ମହାଗହଣ ଲଗାଇ ସମ୍ମରେ୧ । ବେନି ପାଶରେ ବଜାଉଛନ୍ତି ବଗାଙ୍କେ ବୀରଘୋଷ ବାଦ୍ୟ ନୂରେ ହେ । ସୁଜନେ । ନିରନ୍ତରେ ଜୟ ଜୟ ଶବଦ । ବସ୍ତୁପଦେ୨ ଶୁଭଇ ପ୍ରତିନାଦ୩ । ବୃନ୍ଦାରକବୃନ୍ଦ୪ ବରଷନ୍ତି ପୁଷ୍ପ ବଢ଼ାଇ ପରମାନନ୍ଦ ହେ । ୧ । ଦେଖି ସେ ବାନା ମନ୍ଦୁର କର ଗନ୍ଧକ୍ଷବେ ସେ ଗୁଣ୍ଡିଚା ବିନୋଦ । ଚୂର କରାଇ ଶ୍ରୀମହାପ୍ରସାଦ । ରଙ୍ଗ ରଙ୍ଗ ହୋଇ ରଙ୍ଗେ ବେଢ଼ିଯାଇ ଦେଖନ୍ତି ଭକ୍ତ ପ୍ରମୋଦ ହେ । ସୁଜନେ । ଏକ ହସ୍ତରୁ ଆରେକ ନିଅନ୍ତି । ସେବା କର ଶିରେ କର ଦିଅନ୍ତି । ସୁନାସୀରଠାରୁଁ୫ ଅଧିକରେ ଅମୃତକୁଣ୍ଡ ବଳେବଳେ ପିଅନ୍ତି ହେ । ୨ । ଏହି ଟୁକାରେ କୋଳାହଳ ପ୍ରବଳ କୈବଲ୍ୟ ଜୁର ବାଟ-ଯାକ । ଏହା କହିଲେ ହୋଇବ ଅନେକ । ଏକଚୂଣ୍ଡ ହୋଇ ଅଛନ୍ତି ରବରେ୬ ଏକ ବୈକୁଣ୍ଠିଲୋକ୭ ଲୋକ ହେ । ସୁଜନେ । ଯେଉଁରୂପେ ବରଷା ଜଳ ଯାଏ । ଲେଖା ନ ଯାଇ ଗଗନର ତାରା । ସେହି ପ୍ରକାରେ ଜଗନ୍ନାଥ ଗୁଣ୍ଡିଚା ଅମୃତ ସମୁଦ୍ର ପରି ହେ । ୩ । ଅଶେଷ ସୁଖଧାମ ଅଶ୍ଵା ବିଶ୍ରାମ ହରିଷ ଏ କଉତୁକରେ । ବିଜେ କରନ୍ତେ ଗୁଣ୍ଡିଚା ନିଗରେ । ହୁଳା ଦିହୁଳି ଚନ୍ଦ୍ରଦୀପ ଲାଗିଲା ରବି ଅସ୍ତ ସମୟରେ ହେ । ସୁଜନେ । ଏହି ସମୟେ ଭକ୍ତ ଧ୍ରୁବଗ୍ରାହୀ । ରଥ ଉପରେ ବନ୍ଦାପନା ହୋଇ । ଚୂତ୍ୟଙ୍କ କରେ ଶ୍ରୀଭୁଜ ଭର ଦେଇ ଅଳପ ହସି ଓହ୍ଲାଇ ହେ । ସୁଜନେ । ୪ । ବଳଦେବ ଠାକୁରଙ୍କୁ ଅଗ୍ରେ କରି ପଛେ ବିଜୟ ମହାବାହୁ ୮ ଅଶ୍ରୁ ପୁଲକ୦ ହୁଏ ଗୃହଁ ଗୃହଁ । ଅହା ସେ ଭବନା ଭକ୍ତଜନ ମନୁ ସ୍ମରଣେହିଁ ଅନ୍ତର ନୋହୁ ହେ । ସୁଜନେ । ବିଜେ କରି ସିଂହାସନ ଉପରେ । ସେହା ଉଲାଗି ହୋଇଲେ

---

୧ଅଡ଼ମ୍ବରରେ । ୨ଆକାଶରେ । ୩ପ୍ରତିଧ୍ୱନି । ୪ଦେବତାମାନେ । ୫ଇନ୍ଦ୍ରଙ୍କଠାରୁ । ୬ଖରବେଳେ । ୭ତିନିଲୋକ । ୮ବେଶ ଉତାରୁ ।

ସ୍ବରେ । ମହାସ୍ନାନ ସାରି ସୁବେଶ କରାଇ ବନ୍ଦେ କଲେ ମଣ୍ଡପରେ ହେ । ୫ । ଷଡ଼ରସେ ଗୈରିଣି ଭୋଗ କରନ୍ତି ଭୁଞ୍ଜନ୍ତି ପ୍ରଭୁ ଜଗ-ଜ୍ଜିତା । ବଚନରେ କେ କେତେ କହିବ ତା । ମହାସୁପକାରେ ମହାପତନରେ କରଥାନ୍ତି ସୁରମ୍ୟତା ହେ । ସୁଜନେ । ଖୀରୀ ଖେଚଡ଼ୀ ଦିବ୍ୟ ବ୍ୟଞ୍ଜନାଦି । ସେହିମାନ ସେ ପାଉନ୍ତି ସମ୍ପାଦି । ନୋହିଲେ କୃପା ଅନୁକମ୍ପା୧ କରନ୍ତି ତାଙ୍କୁ ପରମ ପ୍ରମୋଦୀ ହେ । ୬ । ଅତ-ମନ ସାରୁ ବଡ଼ିଆଲାଗିରେ କଳସ କମଳାବଲ୍ଲଭ । ସବୁ ସୁଖ ହୋଇଅଛୁ ସୁଲଭ । କେବଳ ନୋହୁଛୁ ଚଞ୍ଚଳା୨ ଚଞ୍ଚଳନେତ୍ରାନ୍ତ ଗୃହାଣି ଲାଭ ହେ । ସୁଜନେ । ଯାଇ ପହୁଡ଼ିଲେ ଦିବ୍ୟ ପଲଙ୍କେ । ତନୁ ଅତନୁ୩ ଶରୀରେ ଚମକେ । ପ୍ରକୃତ୪ ସେବକେ ଯେ ଯାହା ସେବାରେ ରହିଲେ ଗଚ୍ଛେ ନିଃଶଙ୍କେ ହେ । ୭ । ପୁର ନରମାନେ ମହାତୋଷମନେ ଶ୍ରୀନଗରରୁ ବାହୁଡ଼ିଲେ । ସିଂହଦୁଆରେ କପାଟ ପାଡ଼ିଲେ । ଦଣ୍ଡଅଧିମାନେ ଦଣ୍ଡ ଦେବା ଅଶେ ବପୁହରଙ୍କୁ୫ ଲୋଡ଼ିଲେ ହେ । ସୁଜନେ । ଠାବେ ଠାବେ ଲୋକେ ଦୁଃଖେ ରହିଲେ । ଠାକୁରଙ୍କ ବନ୍ଦେ ଗୀତ କହିଲେ । କେଉଁଠାରେ ଗୀତ ନୃତ୍ୟରେ ଉନ୍ମତ୍ତ ହୋଇ ରାତ୍ର ପୁହାଇଲେ ହେ । ୮ । ପ୍ରାତଃସମୟେ ଦୀନବନ୍ଧୁ୬ ପ୍ରକାଶ ଶ୍ରୀମୁଖପଦ୍ମ ବିକାଶଇ । ଜନମନ-ଚକ୍ରବାକ ହସାଇ । [illegible] ପନ୍ଥାର ନାଶ ହୋଇ ଯିବାରୁ ସୁଗତି ବାଟ୭ ଦିଶଇ ହେ । ସୁଜନେ । ନିତ୍ୟକର୍ମ କଷ୍ଟେ କଷ୍ଟେ କରାଇ । ମୁଣୋହିରେ ବନ୍ଦନ୍ତ କଲେ ଯାଇ । ବଡ଼ଥଳେ ଘନବାଦ୍ୟ୮ ବାଜିଲ ଘନେ୯ ଘନଘନ୧୦ ହୋଇ ହେ । ୯ । ତେତେବେଳେ ମନ ଯାହା ହୁଏ ତାହା କାହାଗେ କହିବ କେ ଅଛୁ । ଅଛୁ ଯେ ଦେଖି ହୃଦରେ ଦୈନଲ୍ଲା । ଯେ ଯେତେ

---

୧ ଦୟା । ୨ ଲକ୍ଷ୍ମୀ । ୩ କନ୍ଦର୍ପ । ୪ ସେବାରେ ନିଯୁକ୍ତ । ୫ ଚୋରମାନଙ୍କୁ । ୬ ଦୀନବନ୍ଧୁ = ଜଗନ୍ନାଥ । ଦିନବନ୍ଧୁ = ସୂର୍ଯ୍ୟ । ୭ ମୁକ୍ତିପଥ । ୮ ମନ୍ଦିର ଘଣ୍ଟା କରତାଳ ପ୍ରଭୃତି ବାଦ୍ୟ । ୯ ନିବିଡ଼ ରୂପ । ୧୦ ପୁନଃ ପୁନଃ ।

ଦେଖିଲେ ଚନ୍ଦ୍ରଙ୍କର ସ୍ୱାଦୁ ଚକୋର ପକ୍ଷୀ ଜାଣନ୍ତି ହେ । ସୁଜନେ । ସବୁ ହୃଦୟ ହୃଦୟ ନୁହଇ । ଏହୁଠାରେ ଶୁଣ ତାହା କହଇଁ । ଚନ୍ଦ୍ର ଦର୍ଶନେ ଚନ୍ଦ୍ରମଣି ବାହାରେ ଝରଇ ପାଷାଣ ଦ୍ରବଇ ହେ ॥ ସ୍ନେହ ଶିଖଇ ବନ୍ଧାପନା ବଢ଼ାଇ ବଳସ୍ତ ବଡ଼ ଅବକାଶେ । ଜନେ ଦର୍ଶନ କରନ୍ତି ହରଷେ । ବସ୍ତ୍ରାନ୍ୟ ବାଷ୍ଟାମାନ ପୂର୍ଣ୍ଣ କଲ ତୃପ୍ତି ହୁଅ ସବର୍ତ୍ତେ ହେ । ସୁଜନେ । ବଡ଼ ଗହଳ ବଡ଼ଦାଣ୍ଡ ଯାକ । କେ କା ଜାଣା ବା ଲାଗିଲା ଅନେକ । ବାରନାରୀ୧ ପ୍ରିୟେ ବୈଶ୍ୟ ଆଦି ନାନା ସ୍ୱର ବହନ୍ତି ଲୋକ ହେ । ୧୧ । ବେଢ଼ ବେଶ ବନ୍ଧନ କୁଣ୍ଡଳାଦି କର୍ଣ୍ଣେ ମର୍କତ କଣ୍ଠେ ମଣି । ମହା ଜମନୀୟ ମୋତିବଳଣି । କେୟୂର୨ କଙ୍କଣ ଅଙ୍ଗୁଳିଭୂଷଣ ହାର ପଦକ କିଙ୍କିଣୀ ହେ । ସୁଜନେ । ଦିବ୍ୟ ଅମ୍ବରମାନଙ୍କରେ୩ ଶୋଭା । ଦୂରୁଁ ଦେଖିଲେ ଜନମନ ଲୋଭା । ଦ୍ରବ୍ୟ ଦ୍ରବ୍ୟଙ୍କ ଦ୍ରବୀଭୂତ କରନ୍ତି ତାହା ଇନ୍ଦ୍ରସ୍ୱ ପ୍ରଭା ହେ ।୧୨। ଚୂଆ ଚନ୍ଦନ କୁଙ୍କୁମ ଆଦି ଦେହେ କୁସୁମରେ ଶୋଭା ଦିଶନ୍ତି । ଉଚ୍ଚ ଉଡ଼ନ୍ତାମାନେ୪ ବସିଛନ୍ତି । ଯଜୀପୁରୁଷମାନଙ୍କୁ କର ଜୋଡ଼ି ବହୁଥ ରସ ଦେଖାନ୍ତି ହେ । ସୁଜନେ । ଦିବ୍ୟାଞ୍ଜନ ସିନ୍ଦୂରରେ ମଣ୍ଡିତ । ଫୁଲ ତାମ୍ବୁଳରସେ ଅଖଣ୍ଡିତ । କାମ ବଶ ହୋଇ ଚତୁର ବନ୍ଧୁ ଜନେ ମୋହି ନୁଅନ୍ତି ପଣ୍ଡିତ ହେ । ୧୩ । ନାଗର କୃଷ୍ଣଚନ୍ଦ୍ର୫ ପଡ଼ି ଯହିଁରେ କେ ହେଉଛନ୍ତି ବେଗରେ । କେତେ କହୁବ ତାହା ବଚନରେ । ଦିଶୁଛି ଅନେକ ପ୍ରକାରେ ରୂପକୁ ପସରାମାନଙ୍କ ଠାରେ ହେ । ସୁଜନେ । ତଙ୍କ ହୋଇବ ଟ୍ରଭଙ୍କ ପ୍ରଧଙ୍ଗ । ଏହୁ ଘେନ ଗ୍ରୁଡ଼ିଲ ତହିଁ ରଙ୍ଗ । ତେଙ୍ଗଣ କଳ୍କେଦ ହୋଇଅଛୁ ଅଭେଦ ଘନ ବିଦ୍ୟୁ ସଙ୍ଗ ଧରିଛି୬ ହେ । ୧୦ । ଜଗମୋହନି ତନୁ ଜଗମୋହନୀ ସ୍ୱଗ ସମ ଦିନ ଜାଣିଲେ । ବକ୍ଷରୁ ବସ କର ଛୁଣିଲେ । ବେଶ ବନ୍ଧନ ଅଗ୍ରନ୍ତ

---

୧ ବେଶ୍ୟା । ୨ ତାଡ଼ ବୀଜ ପ୍ରଭୃତି । ୩ ବସ୍ତ୍ରମାନଙ୍କରେ । ୪ ପୀନସ୍ତନୀ । ୫ ଜଗନ୍ନାଥ ପ୍ରତିମା । ୬ ଜଗନ୍ନାଥ ଓ ଲକ୍ଷ୍ମୀଙ୍କର ଘନ ଓ ବିଜୁଳୀ ପରି ଅଭେଦ ଅଙ୍ଗସଙ୍ଗ । ୭ ଯୌବନ ।

ବାସବୃନ୍ଦ ଅପାର କର ଗଣିଲେ ହେଁ । ସ୍ୱଜନେ । ତଥି[୧] ଅମ୍ବୁଦେ[୨]
ବଧୂରେ[୩] ଅମ୍ବୁଦ[୪] । ବଧୂରତା[୫] ବଚନେ କେ କହିବ । ତଥି
ସଙ୍ଗେ ବନ୍ଧୁଭାବ ଭଜିଲେ ତଥିଗଣ୍ଡି[୬] ଦିବ୍ୟସ୍ୱରୂପ[୭] ହେବ । ୧୫ ।
ତକାର ବମ୍ପା ସଖୀଙ୍କ କମଳା କହିଲେ ସକଳ ଚରିତ । ସଖି
ଶୁଣିଲ ହିଙ୍କ ନିଘାତ । ବରଷା ପ୍ରକାଶୀ ହେଲେ ସୁଖସାଗର[୮] ପ୍ରମୋଦ
କର ଜଗତ ଲୋ । ସ୍ୱଜନ । ଯେ ଯାହାର ହୃଦେ ହିଁ ପରକାଶି । ତାରେ
ହେଲେହେଁ ତ ତାକୁ ପରସ୍ପର । ମହତ ସେବେକ ପ୍ରଭୁ ହେଲେ ନାହିଁ
ଏଡ଼େ ଅବଧି ହେତୁ ଗୋ । ୧୬ । କେତେବେଳେ ଏହି ପ୍ରକାରେ
ନ କହି ବରଷାରେ ସ୍ୱଜନ କରନ୍ତି । ମୌନ ସବୁ ଶିଖୀ ସୁଖ ହରନ୍ତି ।
ସ୍ୱ ସ୍ୱ କର ପଣ ଗୃହବାଶୀ କହି ଶୋକସାଗରୁ ତାରନ୍ତି ଗୋ ।
ସ୍ୱଜନ । ମୋର ହୃଦୟ ତ ଥିଲି ସରଲ । ଥନାଇଲେ ସେ ଶ୍ରୀମୁଖ-
ମଣ୍ଡଳ । ଦୁଃଖ ନାଶ ଯାଇ ସୁଖ ଜାତ ହୋଇ ଆନନ୍ଦ ହୁଏ ପ୍ରବଳ
ଗୋ । ୧୭ । ପ୍ରଭୁ[୧୦] ନ ରଖିଲେ ନ ରହଇ ଭଲେ ପଦ୍ମଗୃହୀମାନ
ମହିମା[୧୧] । ନାନ୍ତି ଜ୍ୟୋତି[୧୨] ସବୁ ସୁଖଧାମୀ । ଗୁଣଗ୍ରାହୀ ଗୁଣ କଲେ
ଥର ଷଣ ରହେ ସ୍ୱ ଗୁଣ ଗଉମା[୧୩] ଗୋ । ସ୍ୱଜନ । ଦୁଣାଗୁଣିରୁ
ନାହିଁ କିଛି କାର୍ଯ୍ୟ । ପ୍ରଭୁ ପ୍ରଧାନ ସବୁରୂପେ ଥାପିବ । ନାୟକ ସାଗ[୧୪]
ବଇଗ[୧୫] ବେଖାରେ ବଥିଥି ବନଗ୍ରା ସଙ୍ଗ ଗୋ । ସ୍ୱଜନ । ୧୮ ।
ଦେଖ ଦେଖ ଲତା ହେଲେହେଁ ଜଡ଼ତା ତରୁମାନଙ୍କୁ ନ ଛାଡ଼ନ୍ତି ।
ଏ ସମୟ ଗୋ ସଖୀ ଏହିମତି । ପୟୀଙ୍ଗୀ ବସା କରି ଏ ବରଷା
ମହାସୁଖରେ ବସନ୍ତି ଗେ । ସ୍ୱଜନ । ଦେଖ ପ୍ରଫୁଲ୍ଲିତ ମଧୁପାଣ୍ଡବ[୧୬]
ଶିଖେ ଶଖା[୧୭] ଯେ କରନ୍ତି ତାଣ୍ଡବ[୧୮] । ଜାଣୁ ନାଁ ଥିଲ ଏ ଜଳଦ

---

୧ବସ୍ତୁ, ଜଗନ୍ନାଥ । ୨ହେନ୍ତେଦ୍ରେ । ୩ଜଳଦ ଠାରେ । ୪ଅସ୍ନେହ ।
୫କାତରତା, ବନ୍ଧନତା । ୬କର୍ପୂର ଗଣ୍ଡି । ୭ଅତ୍ୟନ୍ତ ସ୍ନେହ ।
୮ଆନନ୍ଦ ସାଗର ଜଗନ୍ନାଥ । ୯ଧର୍ମତ । ୧୦ସ୍ୱାମୀ । ୧୧ମହତ୍ତ୍ୱ ।
୧୨ଘାର୍ଯ୍ୟାର । ୧୩ଗୌରବ । ୧୪ସ୍ନେହ । ୧୫ଅସ୍ନେହ । ୧୬ଅଙ୍କୁନ-
ବୃକ୍ଷ । ୧୭ମୟୂର । ୧୮ନୃତ୍ୟ ।

ସମସ୍ତେ[1] ହରିବ ମୋତେ ଦଣ୍ଡିବ ଗୋ । ୧୯ । ଦେଖ ଏ ବର୍ଷୁକ ଘନ କୋଳେ ମିଳି ବିହାର କରନ୍ତି ସନ୍ତତେ । ଏହିରୂପେ ଉତ୍ତମ କାନ୍ତା କାନ୍ତେ । ଜଗତ୍ତି[2] ଅଟେ ଏହି ମହାସୁଖ ବହି କ୍ରୀଡ଼ା କରନ୍ତି ଏକାନ୍ତେ ଗୋ । ସଜନି । ମୋହ ପରାୟେ ଦିବସ ରଜନୀ । ପ୍ରଭୁ ମୁଖ ନ ଦେଖିଲେ ସଜନି । କର୍ମେ ଯାହା ଥାଇ ଅବଶ୍ୟ ଭୁଞ୍ଜଇ ମାୟାରେ ତାହା ନ ଯେବ ଗୋ । ୨୦ । ଦେଖ ଚନ୍ଦ୍ର ସୂର୍ଯ୍ୟେ ଆପଣା ଐଶ୍ୱର୍ଯ୍ୟେ ବୁଲୁଛନ୍ତି ତିନି ବ୍ରହ୍ମାଣ୍ଡେ । ପୁଣି ପଡ଼ନ୍ତି କେତୁ ରାହୁ ତୁଣ୍ଡେ । କାଳଚକ୍ର ଯାକି କା ଠାରେ ନ ପଡ଼େ କାହାକୁ ଅବା ନ ଦଣ୍ଡେ ଗୋ । ସଜନି । ଦେଖ ମହାଭୂତିଦାତା[3] ଈଶ୍ୱର[4] । ଖଣ୍ଡେ କପାଳ[5] ଧରିଛନ୍ତି କର । ଦିଗମ୍ବର[6] ହୋଇ ଶ୍ମଶାନରେ ଥାଇ ସେ ପୁଣି ବଶ କର୍ମର ଗୋ । ୨୧ । କର୍ମଠାରୁ ଫଳ ଗଙ୍ଗାଠାରୁ ଜଳ ଦଇବଠାରୁ ବଳ ନାହିଁ । କେତେ କହିବ ଏହା ପ୍ରାଣସହି । ଯାହା ପ୍ରାଣନାଥ ଶଙ୍ଖଚକ୍ରହସ୍ତ ସେ ହୁଏ ବିରହେ ଦହି ଗୋ । ସଜନି । ଏହା ବଚନ ହୃଦ ହୁଏ ଯାହା । ସେହି ସିନା ଜାଣଇ ସଖି ତାହା । ମାନହୀନ ହୋଇ ରହି ନ ପାରଇ କେ ସହି ପାରିବ ତାହା ଗୋ । ୨୨ । କମଳଲୋଚନା ବୋଲନ୍ତି ଶୋଚନା ନ କର ଠାକୁରାଣୀ ମାଏ । ତୁମ୍ଭଠାରେ ତାଙ୍କର ମହାଭୟେ । ଏ ଶ୍ରୀମୁଖ ଚାହିଁ ଯିବୁ ବୋଲି କହି କହି ଚାଲନ୍ତେ ସେ ପାଏ ଗୋ । ସଜନି । ତୁମ୍ଭେ ହେଲେହେଁ ଜଗତ-ଜନନୀ । ଯିବେ ଅବା କେମନ୍ତେ ସଙ୍ଗ ଘେନି । ବ୍ରହ୍ମାଦି ଶଙ୍କର ଯାହା ଚରଣରେ ଅଛନ୍ତି ପୂରି ମେଦିନୀ ଗୋ । ୨୩ । ତୁମ୍ଭେ ରତ୍ନାକରନନ୍ଦନୀ ତୁମ୍ଭର ପ୍ରାଣବଲ୍ଲଭ ଜଗନ୍ନାଥେ । କୋଟି ଇନ୍ଦ୍ର ପଦବୀ ତୁମ୍ଭ ହାତେ । ଲୋକଙ୍କ ସୁନ୍ଦର ହେଲେ ଅସୁନ୍ଦର ତୁମ୍ଭେ ଯାଆନ୍ତି ତ ରଥେ ଗୋ । ସଜନି । ତୁମ୍ଭେ ଏବେ ଏ ଉଦବେଗ ନୁହ । ମୋର ଯାଇଁ ଆସିବା ଯାଏ ସହ । ସେ ତୁମ୍ଭ ବିରହେ ଜଣାଇଲେ ସ୍ନେହେ ଥିର କରି ଥିବ

---

୧ ବର୍ଷାକାଳରେ । ୨ ଅଟ୍ଟାଳିକା । ୩ ଐଶ୍ୱର୍ଯ୍ୟଦାତା । ୪ ଶିବ । ୫ ମନୁଷ୍ୟ ମୁଣ୍ଡର ଖପୁରି । ୬ ଉଲଙ୍ଗ ।

ଦେଖ ଗୋ । ୨୪ । ଚନ୍ଦ୍ରମା ବାହାରେ କେତେଟ ଉପରେ ଚକୋର
ଧଇର୍ଯ୍ୟ ଧରଇ । ମେଘ ନ ଥିଲେ ଚାତକ ଜରଇ । ମକରନ୍ଦ ଦଣ୍ଡେ
ନ ପାଇଲେ ଚଣ୍ଡ ଭ୍ରମର ପ୍ରାଣେ ମରଇ ଗୋ । ସଜନି । ତୁମ୍ଭ ସଙ୍ଗ
ନ ପାଇ ଚିଉବାହା । ଅସିବାକୁ ହେଉଥିବେ ଉତ୍ସାହା । ଚାହୁଁ ଥିବ ବାଟ
କାଳ ପରଭେଟ ହେବେ ତୁମ୍ଭ ପ୍ରାଣନାହା ଗୋ । ୨୫ । କାମ
ଉର୍ଦ୍ଧ୍ୱବାହୁ ହୋଇ ଚାହୁଁ ଚାହୁଁ ଓଠାର ଅଣିବ ତାହାଙ୍କୁ । ସେ ଯେ
ଉଦ୍ବୋଧ ନ କରେ କାହାକୁ । ଶତ୍ରୁ ଅପ୍ରମଦ୍ୟ ଖୁଟଳ ହୃଦୟ ପ୍ରାୟେ
ବିୟୋଗ ଯାହାକୁ ଗୋ । ସଜନି । ମାଳାକାର ଫୁଲଝୁଲ ପାଳଇ ।
ସ୍ନେହେ ଜଳ ଦେଇ ଫୁଲ ତୋଳଇ । ଅଙ୍ଗାରକ[1] ଅଗେ ଚନ୍ଦନ
ପଡିଲେ ଦଣ୍ଡକେ କାଟି ଜାଳଇ । ଗୋ । ୨୬ । ମୋହନ ଶପଥ ଏ
ଶ୍ରୀମୁଖେ ଲଜାଏ ପ୍ରସନ୍ନ ନ କର ଅନ୍ତର । ଏତେ ବୋଲି ନୟନୁଁ
ପୋଛି ନୀର । କରେ କର ଧରି ପ୍ରବୋଧନ କରି ବେଗେ ହୋଇଲେ
ବାହାର ସେ । କମଳା । ଉଦ୍ଭୂମ୍ବୁରୁ[2] ମଣ୍ଡପକୁ ଚଳଲେ । ମହାପ୍ରଭୁଙ୍କୁ
ସମ୍ମୁଖେ ମିଳେଲେ । ଖଣ୍ଡେଦୂରୁ ଦେଖି ପ୍ରଭୁ ପଦ୍ମଆଖି ହୃଦପଦ୍ମେ
ଲଭିଲେ ସେ । ୨୭ । ଶିରେ କର ଦେଇ ହସ ହସ ହୋଇ ଅପସର
ରହି କମଳା । ଚାହିଁ ବୋଲନ୍ତି ପ୍ରଭୁ ଚକାଡୋଳା । ନ କହିଲେ
ତୁମ୍ଭ ଭେଦରୁ ହେ ଅମ୍ଭ ବେଭାର ଘଳଣି ଭୁଲା ଗୋ । କମଳା । ସବୁ
ପ୍ରକାରେ ଅମ୍ଭ ଅଜୁ ଦୋଷ । ନ କହିଲେ ତୁମ୍ଭର ସନ୍ତୋଷ । ସେ
ଘେନ ନିଜ ବାରଣୀ[3] ବାରଣରେ[4] ବାରଣ[5] କରେ ଅଙ୍କୁଶ ଗୋ
। ୨୮ । ତୁମ୍ଭେ ତ ଜାଣ ଯେ ଅମ୍ଭ ପଞ୍ଚପ୍ରାଣ ନ କହି ତାହାଙ୍କୁ ଥଇଲୁଁ ।
ନ ଜାଣିବା ଦୋଷ ଅମ୍ଭେ ପାଇଲୁଁ । ବଚନ କୁପଥ୍ୟ ହୋଇ ଅତ୍ୟୁଷଣ
କଥାହିଁ ଭୂଷଣ କଲୁଁ ଗୋ । କମଳା । ଏବେ କ କରି ତାହାଙ୍କୁ
ଚାହିଁବୁଁ । କେଉଁ ପ୍ରକାରେ ବିନୟ କହିବୁଁ । କହ ଏ ଘଷଣ୍-
ସନ୍ତୁ ଅବସ୍ଥ କେଉଁ ରୂପରେ ହୋଇବ ଗୋ । ୨୯ । କହ ତାଙ୍କୁ

---

୧ ଅଙ୍ଗାର କରବା ଲୋକ । ୨ ଦ୍ୱାରଦେହଳୀରୁ । ୩ ନିଷେଧ ।
୪ ହସ୍ତିଠାରେ । ୫ ଅଘାତ ।

ଶୁଭ ସୁଲଗ୍ନ ସନ୍ଦେଶ ଶୁଣି ଶ୍ରବଣ ହେଉ ସୁଖୀ । ଏବେ ତ କରନ୍ତୁ ସେ ହେଲେ ଦୁଃଖୀ । ଏହୁ କଥା ଶୁଣି ନ ସରେ ରଜନୀ ଦିବସେ ହୃଦେ ତା ଲେଖି ଗୋ ! କମଳା । ଏଣେ ତହୁ ଖରଶ୍ୱାସ ଛାଡ଼ିଲେ । ପ୍ରିୟ ଦୁଃଖ ମନରୁ ନ ଛାଡ଼ିଲେ । ବୋଲେ ଦୀନକୃଷ୍ଣ ଏହୁ ସମୟରେ କମଳାଙ୍କ ରଯୋଡ଼ିଲେ ହେ । ସୁଜନେ । ୩୦ ।



## ଦ୍ୱାବିଂଶ ଛାନ୍ଦ ।

### ରୁକ୍ମଣୀ ଚଉତିଶା ବାଣୀରେ ।

ଶୁଣିବା ଜଗଜ୍ଜ୍ୟୋତି ତ୍ରୈଲୋକ୍ୟ ଅଧିପତି ତୁମ୍ଭେ ସକଳ ସୁଖରାଶି । ରତ୍ନାକରନନ୍ଦନୀ ସୁର[1] ନର ବନ୍ଦନୀ ତୁମ୍ଭର ସେ ପାଟମହିଷୀ ହେ । ମହାପ୍ରଭୁ । ତାଙ୍କୁ ଅପୂର୍ବ କେଉଁ ସୁଖ । ଅପୂର୍ବ ଏକା ପଦ୍ମମୁଖ । ଏହୁ ଯୋଗ ଦୁଃଖରେ ତୁମ୍ଭଙ୍କ ଜଗନ୍ତରେ ତାହାଙ୍କ ମନ ପଙ୍କଜାନ୍ତ ହେ । ୧ । ଥରେ କଲା ଦିନରୁ ବଧୂସର[2] ଅଙ୍ଗରୁ ବାହାରୁ ନୂଆଳ ସନ୍ତାପ[3] । ଅନେକ ଶୀତକର[4] ଉପଚାର ଓହୋର ନୂହେ କାମାଗ୍ନି ଅବା ଲୋପ ହେ । ମହାପ୍ରଭୁ । ତୋଳ ତୋଳ ପଙ୍କଜ-ପତ୍ର । ସରୋଜ ହେଲେନି ନେତ୍ର[5] । ବନୀତାର ପକ୍ଷଗମାନେ ଅକାଶ ପଗେ[6] କଲ୍ପି ଚନ୍ଦ୍ର[7] ଚନ୍ଦନେ ମାତ୍ର ହେ । ୨ । ଏତେକେ ହେଁ ତପତ୍ ନୋହିଲା ସମାପତ ଅଉ କ ଦେବ ମୁଁ ଅଣାଇ । ଜଳଯନ୍ତ୍ରମନ୍ଦିରେ ପଦ୍ମବଣଦ୍ୱାରରେ ଶୁଆଇ ଅଇଲ ଜଣାଇ ହେ । ମହାପ୍ରଭୁ । ଏତେ ହେଁ ସୁନ୍ଦରୀ ସେ କର । ପ୍ରଭୁଙ୍କ ନାହିଁ ନା ଉତ୍ତର । ଯେଉଁ କାଳେ ବଦେଶୀ ଗୃହେ ମିଳନ୍ତି ଅସି ସେ କାଳେ ଗନ୍ତ୍ରିଗ୍ନ ବହାର

୧ ଦେବତା । ୨ ବିଶେଷ ପାଣ୍ଡୁରବର୍ଣ୍ଣ । ୩ ଉଷ୍ଣତା । ୪ ଶୀତଳକାରକ । ୫ ପଦ୍ମଧାନ । ୬ ଶୂନ୍ୟ । ୭ କର୍ପୂର ।

ହେ ।୩। ନୋହିଲେ କିପାଁ ଚମ୍ପା ଶମ୍ପା[1] ହେମ[2] ହସନ୍ତା ସୁବର୍ଣ୍ଣ[3] ବର୍ଣ୍ଣ[4] ଦିଶନ୍ତା । ପୂର୍ଣ୍ଣଚନ୍ଦ୍ରମଣ୍ଡଳଜିତ ମୁଖମଣ୍ଡଳ ଉରଜ ଉପରେ ବସନ୍ତା ହେ । ମହାପ୍ରଭୁ । ଘନକୁଟିଳ[5] କେଶପାଶ । ଜନାଭ୍ରମରେ ଉପହାସ । ଏବେ ସେ ସୁମନହସ[6] ବେଶ ହୋଇ ଜନାଂଷ ବଢ଼ଇ କରଇ ମାନସ ହେ । ୪ । ବିମ୍ବ[7] ବଧୂଳି ସୁର କରେ ଯେଉଁ ଅଧର ସେ ଏବେ ହାସକୁ ଛାଡ଼ିଲା । ଜ୍ୟୋତିଧର[8] ମୁକୁତା ହୀରା ମାଣିକ୍ୟ ଜିଣା ଦଶନେ ନୀରସ ପଡ଼ିଲା ହେ । ମହାପ୍ରଭୁ । ଯେଉଁ ବଚନ ସମ ପାଇ । ସରସ୍ୱତୀ ବୀଣା ଶିଖଇ । ଗୁରୁ କର ବସନ୍ତକାଳକୁ ପତଭ୍ରୁତ[9] କୁହୁ କୁହୁ ମାତ୍ର କହଇ ନେ । ୫ । ଏବେ ସେ ସ୍ୱରଭଙ୍ଗ କୃଶ ପାଣ୍ଡୁର ଅଙ୍ଗ କମ୍ପପୁଲକ ସ୍ୱେଦ[10] ଜାତ । ଅଶ୍ରୁ ପୁଲକ ଦେଖି ଧଇର୍ଯ୍ୟ ନୁହେ ରଖି କେତେ କହିବ ସେ ଚରିତ ହେ । ମହାପ୍ରଭୁ । ମୋହ ଯିବାକୁ ଥିବେ ଗୁହ୍ୟ । ଯତ୍ନେ ମଣନ୍ତି ଦଣ୍ଡକହି । ଏହୁକ୍ଷଣି କହିଯ କରବେ ଦେବଗଣେ ହେଲେ ଯେ ଅଛି ଅଛୁ କହୁ ହେ । ୬ । ପ୍ରଭୁ ବୋଲନ୍ତି ଏହୁରୂପେ ଗୋ ପ୍ରାଣହିକୁ ଯାହା କହିଲେ ସେ ପ୍ରମାଣ । ହୃଦକେହେଁ ଅନ୍ତର ନାହିଁ ତାଙ୍କ ଅମ୍ଭର ପାଇ ନାହାନ୍ତି ସେ କଷଣ ଗୋ । ଆଗୋ ସଖି । ଏବେହେଁ ତୁମ୍ଭେ ବେଗେ ଯାଅ । ଅଇଲେ ବୋଲି ତାଙ୍କୁ କହ । ଯେମନ୍ତେ କୋପ ଜାତ ନୁହେ ସେରୂପେ ମନ୍ତ୍ର ପ୍ରବୋଧନା କର ମଣାଅ ଗୋ । ୭ । କାଲି ଅବଶ୍ୟ ନୀଳଗିରିନଗରେ ହେଳ ଅବସାନ ସମୟେ ହେବୁଁ । ତୁମ୍ଭକୁ ଯେନ ତାଙ୍କ ହୃଦବେଦନାଯାକ ବଳସ୍ୟେ କହୁ ବଜାଣିବୁଁ ଗୋ । ଆଗୋ ସଖି । ତୁମ୍ଭେ ତ କହିଲ ଅମ୍ଭଙ୍କୁ । ଅବଶେ ନୋହେ କହିବାକୁ । କେବଳ ତାଙ୍କ ପାଖ ଛଡ଼ିଲାଦିନୁ ଲାଗି ହୋଇଲୁଁ କାମବଶିଖକୁ[11] ଗୋ ।୮। ଶ୍ରୀମୁଖଁ ଏତେ ଶୁଣି ଶିରରେ ହୁଦେଇ ପାଣି କମଳଲୋଚନୀ ଚଳଲେ ।

---

୧ ବହୁଧର । ୨ ସୁବର୍ଣ୍ଣ । ୩ ଜ୍ୱଳିମବର୍ଣ୍ଣ । ୪ ମଳିନ । ୫ କୁଞ୍ଚିତ । ୬ ପୁଷ୍ପ । ୭ ବିମ୍ବଫଳ । ୮ ଅତି ଉଜ୍ଜ୍ୱଳ । ୯ କୋକିଳ । ୧୦ ଝାଳ । ୧୧ କାମବାଣକୁ ।

କ୍ଷୀରସାଗରସୁତା ଜଗନ୍ନାଥବନିତା ସମ୍ମୁଖରେ ଭୁଜ ଦେଇ ମିଳିଲେ ଯେ । ଅଙ୍କେ ଜନେ । ପ୍ରସନ୍ନ ଦେଖି ସଜନୀର । ହୃଦେ ହରଷ ଅବତାର୧ । ବମଳକେଳୀ ହସି, ବୋଲନ୍ତି ପ୍ରଭୁ ଅସି ପ୍ରବେଶ ହେଲେଟି ତୁମ୍ଭର ଗୋ । ଅଗୋ ସଖି । ୯ । ଅଙ୍କୀ ଦେଲେ ଏତେହେଁ ତୁମ୍ଭେ ଯାଇଂ ବେଗେନ୍ଦ୍ରହଁ ଅମ୍ଭ ବନ୍ଦେ ବାରତା କହ । କର ଧର ଏତେହେଁ କହିବଂ ଅମ୍ଭ ସ୍ନେହେ ମଣ୍ଡନେ କରବେ ନେହେନ୍ଦ୍ର ଗୋ । ଅଗୋ ସଖି । ଏବେ ମାଙ୍କଣା ବେଗେ ସାର । ମଣୋହରେ ହଜାଣ୍ଡ କର । ନାନା କୁସୁମେ ଗନ୍ଧ ମସ୍ତକେ କର ଶୋଭା ସୁମନମାଳଙ୍କୁ୩ ଉଦ୍ଧର ଗୋ । ୧୦ । ଅର୍ଦ୍ଧଚନ୍ଦ୍ର ଦୂଷଣ ଲଲାଟରେ ଭୂଷଣ କର ସିନ୍ଦୂର ଅର୍ଦ୍ଧଚନ୍ଦ୍ରା । ମଦକଳ୪ଖଞ୍ଜନ ଗଞ୍ଜନ ନୟନରେ କଜ୍ଜଳ ଦେଉ ଉଜ୍ଜ୍ୱଳତା ଗୋ । ଅଗୋ ସଖି । ସୁରଙ୍ଗ ଅଧରକୁ ପାଉ । ତାମ୍ବୂଲ କୃତାର୍ଥକୁ ଯାଉ । ତ୍ରିଲୋକମଣ୍ଡନ୫ ନୟନ ବମଣ୍ଡନ୬ ଅଙ୍ଗେ ମଣ୍ଡନ୭ ମଣି ଦେଉ ଗୋ । ୧୧ । ଶୁଣି ଅଳପ ହସି ବୋଲନ୍ତି ପଦ୍ମବାସୀ୮ ସତ କହ ଗୋ ପ୍ରାଣସଖି । ବସ୍ତ୍ର କୁଚ୯ ହୃଦୟ ଜାଣିବାକୁ ହୃଦୟ ସଂସାରମଧ୍ୟେ ନ ଦେଖି ଗୋ । ଅଗୋ ସଖି । ବଚନ ଅମୃତୁ ଅଧିକ । ନୀରସେ୧୦ କୁଳିଶୁଂ୧୧ ଅ[illegible] । ସୂକ୍ଷ୍ମରୂପ୧୨ ଯେମନ୍ତ ଦେଖିବାକୁ ତେମନ୍ତ ଗତି୧୩ ଜାଣି ନ ପାରେ ଲୋକ ଗୋ । ୧୨ । ମୁଁ ତାହାଙ୍କର ପ୍ରିୟ ହେଲେହେଁ ତାଙ୍କ ମାୟା ଜାଣିବାକୁ ନୋହେ ଭରସା । ନୋହିଲେ ଏ ବରଷାକାଳେ ଏ ମୋର ଦଶା ଅଧାଙ୍କ କରେ ଲୋକହସା ଗୋ । ଅଗୋ ସଖି । କହ କହ ପ୍ରଭୁଙ୍କ କଥା । ଶୁଣି ମୋ ମନ ଯିବ ବ୍ୟଥା । ଶ୍ୟାମସୁନ୍ଦର ଅଙ୍ଗ ଦେଖି ତାହାଙ୍କ ନାଁ ଭଙ୍ଗ ଥାଉ ଲୋଡ଼ିବା ସ୍ୱବୁଦ୍ଧ କଥା ଗୋ । ୧୩ ।

---

୧ ଜାତ ହେଲା । ୨ ଦୂଷଣ ହେବାରେ । ୩ ଫୁଲମାନଙ୍କୁ । ୪ ମତ୍ତ ହୋଇ ଧ୍ୱନି କରିବା । ୫ ତ୍ରିଲୋକ ଅଳଙ୍କାର । ୬ ଜଗନ୍ନାଥଙ୍କର ଭୂଷଣସ୍ୱରୂପ । ୭ ଭୂଷିତ । ୮ ପଦ୍ମବାସିନୀ ଲକ୍ଷ୍ମୀ । ୯ କପଟ । ୧୦ ନିଷ୍ଠୁରପଣରେ । ୧୧ ବଜ୍ରରୁ । ୧୨ ଚନ୍ଦ୍ର ସୂର୍ଯ୍ୟ । ୧୩ ସ୍ୱରୂପ ।

ସବୁ ବେଶ ଭଞ୍ଜନ ଶ୍ରୀମୁଖ ଦରଶନ ସବୁ ସମ୍ପତ୍ତି ମୋର ସେହି । ଘନାଘନ୧ ଗୃହକ ନ ପାଇ ସେବା ଯାକ ସୁଖକୁ ବହଇ ଯେ ନାହିଁ ଗୋ । ଅଗୋ ସଖି । ପାଇଲା ମାତ୍ରେ ବସନାକୁ । ତହୁଁ ଧରନ୍ତି ପକ୍ଷବକୁ । ଜ ଛ କରି କୁମୁଦ ଘୂଡ଼ଇ ତାର ହେ୨ ଚନ୍ଦ୍ରମା ଉଦୟକାଳକୁ ଗୋ ।। ଯେତେବେଳେହେଁ ରଥେ ବିଜେବେ ପ୍ରଭୁ ପଥେ ସବୁ ସୁଖସମ୍ପତ୍ତି ହେବ । ସପତସ୍ୱରୁ୩ ରାଗ ଜନ୍ମିଲା ପ୍ରାୟେ ରାଗ୪ ଅନନ୍ତ ଭାବକୁ ପାଇବ ଗୋ । ଅଗୋ ସଖି । କହନ୍ତି ବୋଲନ୍ତି କମଳାକ୍ଷୀ । ସନ୍ଧ୍ୟା ନାହିଁ କମଳାକ୍ଷି । ଦକ୍ଷିଣମୂର୍ତ୍ତି ସାର ରଥ ମଣ୍ଡନି କର ବଳେ ଉତ୍ସାହ ପଡ଼ି ଅଛୁ ଗୋ । ୧୫ । ଏହି ସମୟେ ଅଛି ଜଣାଏ ଏକ ଦାସୀ ସୁଣିମା ଠାକୁରାଣୀ ମାଏ । ନନ୍ଦିଘୋଷରେ ବସି ପ୍ରବେଶ ହେଲେ ଅସି ପ୍ରମାଣୀ ପ୍ରଭୁ ଦେବସ୍ନାନେ ଗୋ । ଅଗୋ ସଖି । ବାହରେ ଥଇଲ ମୁଁ ଦେଖି । ଗହଳ ନୁହଇ ଚଳେଖି । ଦୀନକୃଷ୍ଣ କହଇ ନୀଳାଦ୍ରିସଖି୫ ଅନାଇ ଅପଲକ ହୋଇଛୁ ଆଖି ଗୋ । ୧୬ ।

## ତ୍ରୟୋଦଶ ଛାନ୍ଦ । ରାଗ ମାଳଶ୍ରୀ ।

ଅଗେ ବଡ଼ପ୍ରଭୁ ତାଳଧ୍ୱଜରେ । ମଧ୍ୟ ଦେବୀ ତୁମ୍ଭ ପ୍ରଭୁ ପଛରେ । କରେ ଧରଛନ୍ତି ଧନୁ ଶରକୁ । କ ଦିଶୁଛନ୍ତି ଜନକ୧ ହୃଦକୁ । ଦ କହନ୍ତ ତାହା ସେ ବପୁ ଜ ବାହା ଦିଶୁ ଅଛନ୍ତି୨ ଯାହା । ତୁମ୍ଭ ଅଙ୍ଗ-ସଙ୍ଗ ଭଙ୍ଗ କରଛୁ ତାହା । ୧ । ନାହିଁ ଗଣ୍ଡିରେଖା ସୁବର୍ଣ୍ଣ ତତା । ସିରକ୍ଷେ ହୋଇଛନ୍ତି ଦୁର୍ବଳରେ । ହେଲେ ମାଳ ଚୂଳ ଅଙ୍ଗକୁ ଘୋଟା । ଲୋକବେଖାରକୁ ଅଛନ୍ତି ଧର । କେବଳ କର୍ପୂର ଅଳକାବଳୀ

---

୧ମେଘଜାଳ । ୨ମୁଦ୍ରିତହେବ । ୩ବୀଣାରୁ । ୪ସ୍ନେହ ବା ସନ୍ତୋଷ । ୫ଜଗନ୍ନାଥଙ୍କୁ ।

ଜର୍ପୂର ତୁଲ ତା ଶୋହେ । ତାମ୍ରଦେହ ଦେଖି ଷ୍ଠାମ ହୋଇବ
ମୋହେ ।୨। ସାରଥି ରଥ ବାହୁଛୁ ଆଗରେ । ସୁବାଟେ ଯେସନେ
ଟୋଇଜ ସାଗରେ । ପଡ଼ି ଅଛନ୍ତି ମହାଟଉଛାଂଠରେ । ମନ ଯାଇ ଅଛୁ
ତୁମ୍ଭ ଠାରେ । ଗୁଲ ଏବେ ଅମ୍ଭେ ଦର୍ଶନ କରିବା ଜଗତଂ୧ ଉପରେ
ରହୁ ।୮ ମାତେ ଟୋଲିନ୍ତି ଚଳି କହୁଲ ଗୋ ସଖୁ ।୩। ଏତେ
ବୋଲି ଜଗତରେ ଆଗେହୁ । ଗୃହୁଁ ଲେ ଦିଶ ନ ଦିଶଇ ମଧ୍ୟ ।
ଚଡ଼ିଛୁ ଚଉଦାଣ୍ଡ ବଡ଼ ଭିଡ଼ । ଠେଲାଠେଲି ପେଲାପେଲି ହାବୋଡ଼ା ।
ରଥ ଗଜ ଅଶ୍ୱ ବଳ ଯେତେ ଚଞ୍ଚଳ କରନ୍ତି ଦଉଡ଼େ । ନଗରରେ
ମଣିମା ଡାକ ଜୟ ଜୟ ।୪। ସୁସ୍ୱର ନାର ଗର୍ଜିବ ବାଦ୍ୟ ।
ଶବଦେ ଶ୍ରୁତି ଅଛୁ ଛେତ୍ର ପଦ୍ମ୨ । ଘନ ଘନ ବାଜେ ବୀରକାହାଳୀ ।
ଶୁଭେ ମଙ୍ଗଳଗୀତ ହୁଳହୁଳି । ମଙ୍ଗଳ ପାଠ ଦ୍ୱିଜବରେ ପଢ଼ନ୍ତି
ସ୍ତୁତିପାଠ ପଢେ ବନ୍ଦୀ୩ । ବୃନ୍ଦାରକ୪ ବୃନ୍ଦେ ବେଢିଅଛନ୍ତି ବନ୍ଧ୫ ।
ଅପସରାମାନେ କରନ୍ତି ନୃତ୍ୟ । ଅଁଜାଶୁଁ ପୁଷ୍ପ ପଡେ ଅପ୍ରମିତ୬ ।
ରହ ରହ ହୋଇ ଝଞ୍ଜେ ସ୍ଫୁରନ୍ତି । ଜୁର ଦେଇ ଚଉବର୍ଗ ସମ୍ପତ୍ତି ।
ବଡ଼ଦାଣ୍ଡ ଅନ୍ନ ପାଠ୭ ବାନି ଅନ୍ତ୮ ହୋଇ ରହୁ ସିନ୍ଧୁଜାମାଏ୯ । ମହା
ସୁଖେ୧୦ ଦେଖନ୍ତି ମହାସୁଖଧାମା୧୧ ।୬। ମୁଖପଦ୍ମେ ନେତ୍ର ଭ୍ରମର ପଡ଼ି ।
ସ୍ନେହ ମୁଧୁରସ ପାରଇ ଛାଡ଼ି । ମନ ହୋଇ୧୨ ଶ୍ରୀଅଙ୍ଗ ଚମାଲେ ।
ବନ୍ଧା ହୋଇ ଖସି ଚାହେ ନାହିଁଲେ । ଦେଖି ଜନମାନେ ହରଷିତ
ମନେ ଆନନ୍ଦେ କରନ୍ତି ସ୍ତୁତି । ଜୟ ଜୟ କମଳାଦେବୀ ପ୍ରାଣପତି ॥
ଦାସୀ ଦେବୀଙ୍କି କହନ୍ତି ମନାଇ । ଶୁଣିମା ମାଏ ସାବଧାନ ହୋଇ ।
ରହୁ ରହୁ ଯେ କରନ୍ତି ବଜାଏ । ଏହୁଟି ତୁମ୍ଭ ଅନୁରାଗ ଭୟେ ।
ରଥହୁଁ ପତାକା ବ୍ୟାଜେଂ କହେ ଏକା ମୋର କିଛୁ ଦୋଷ ନାହିଁ ।

---

୧ଅଟ୍ଟାଳିକା । ୨ଅକାଶ ମାର୍ଗରେ । ୩ଦେବତା । ୪ବନ୍ଦନା କର । ୬ଅପରିମିତ, ଅନେକ । ୭ସୀମାବାରଣ ପାଠବସ୍ତୁ । ୮ସମୀପସ୍ଥ । ୯ଲକ୍ଷ୍ମୀ । ୧୦ଅତିଆନନ୍ଦରେ । ୧୧ଜଗନ୍ନାଥଦେବଙ୍କୁ । ୧୨ମନପକ୍ଷୀ ।

ପ୍ରଭୁ ଅଜ୍ଞାକୁ ମାତ୍ର ନେଇଥିଲା ବନ୍ଧୁ ।୮। ବାନ୍ଧବ ଦର୍ଶନରେ
ଭୃଣ ଧର । କର ଧର କେଶ ମୂଳ-କର୧ । ସେହୁ ଗୁହାର କରଇ
ଅଗ୍ରତେ । ନାହିଁ ଅପରାଧ ମୋର ନ ଦଣ୍ଡ ମୋତେ । ମୁଁ ଅଧିପାଳଙ୍କ
ରଥବାହକଙ୍କ୨ ମୋହ ବୁଦ୍ଧି ଅବା କେତେ । ଏହା କର ଅନନ୍ତ
ଖଟଣୀ ସାମନ୍ତ । ୯ । ଶୁଣି କମଳା ହୋଇ ହରଷ । କହିଲେ
ସେବକର ନାହିଁ ଦୋଷ । ତାଙ୍କୁ କାହିଁପାଇ କଲବା ରୋଷ । ସେ
ବୋଇଲେ ନଜ କର ପ୍ରକାଶ । ପ୍ରଭୁ ଅଜ୍ଞା କର ନୁହଇ ଅବଜ୍ଞା ଦାସ
ହୋଇ କରେ ଦୋଷ । ମାୟା ମୋହ କରଇ ପ୍ରଧାନପୁରୁଷ୩ । ୧୦ ।
ଅନୁରାଗ ଥିଲେ ସ୍ନେହ୪ ଅଇ ମାନ । ଯେବେଲେ ବଡ ବଥା ହୁଏ ସାନ ।
ଦେଖ ପଦ୍ମବନ ଶିନ୍ଦୁକୁ୫ ହରଇ । ଏରଣ୍ଡ ମାତ୍ର ବରେ କରେ ସାର୬ ।
ଏବେ ଚାଲ ଅମ୍ଭେ ସମସ୍ତେହେଁ ଦମ୍ଭ କବାଟ ଦେଇ ରହିବା ।
କଇତବେ୮ ନାଗଶ ବଚନ କହିବା ।୧୧। ହ ବୋଲନ୍ତି ପ୍ରଭୁ ତାହା
ଶୁଣିବା । ଅନୁରାଗ ଭାବ ତହିଁ ଜାଣିବା । ବୋଲନ୍ତି ଯେ ବଚ୍ଛେଦରେ
ହେବେନାହିଁ । ବୁଝିବା ତାହା ଏହିଠାରେ ରହି । ତୁମ୍ଭେ ଏବେ ଦ୍ୱାରରକ୍ଷା
ଯାଇଁ କର ଜାଣିବା ପ୍ରଭୁଙ୍କ ପ୍ରୀତି । ଏବା ନୋହିବ ତାଙ୍କ ଅଗ୍ରତେ
ଅପ୍ରୀତି । ୧୨ । ଏମନ୍ତ କହନ୍ତେ କହନ୍ତେ ଜଗଦୀଶ । ସିଂହଦ୍ୱାରେ
ହୋଇଲେ ପରବେଶ । ହସି ଅଜ୍ଞା ଦେଲେ ବଳେବରଙ୍କୁ୯ । [illegible]
କରିବା ହେଉ ଭିତରକୁ । ଶୁଣି ସୀତାପାଣି୧୦ ମହର୍ଷି ହଠାଣି ବଚେ
କଲେ ଭିତରକୁ । ସେହୁ ଧାମପୁରେ ନେଲେ ଯେ ସୁଭଦ୍ରାଙ୍କୁ । ୧୩ ।
ପଛକୁ ରହି ପ୍ରଭୁଦେବରାଜ୧୧ । ହୋଇଲେ ଶ୍ରୀଶ୍ରୀଯୁକ୍ତ ସଙ୍ଗ ଭେଟ ।
କାମ ଅନେକ ଦିନୁ ଥିଲା ପାଞ୍ଚି । ସେହୁ କାଳରେ ହେଲା

---

୧ଦ୍ୱାର ଫିଟାଇ ଦେଇ । ୨ରଥବାହକଙ୍କ । ୩ପୁରୁଷୋତ୍ତମ ଜଗନ୍ନାଥ । ୪ସ୍ନେହ । ୫ଶଶାଙ୍କପାର୍ଶ୍ୱ ଶଙ୍କୁ । ୬ଶୀଘ୍ର । ୭ଶ୍ରେଷ୍ଠ । ୮କପଟରେ । ୯ବଳଭଦ୍ରଙ୍କୁ । ୧୦ବଳଦେବ । ୧୧ଦେବରାଜ ଜଗନ୍ନାଥ ।

ସବ୍ୟ ଧାଚୀଂ । ଛଗଚ ନୟନ୨ ନବାଣ-ଅୟନ୩ ଛାଣିଲେ ସେହି ଦୁମନ୍ତ୍ରୁ । ମହାପାପ। ଘଡିଲେ କାଳଦଣ୍ଡ୪ ଭୟେ ।। କାମିନୀଙ୍କ କାନ୍ତ ହେଲା ପ୍ରାପଚ । ଅର୍ଥାତ୍ ଅର୍ଥରୁ୬ ହୋଇଲା ନବର୍ତ୍ତ । ସେ ଭେଟ କାମଧେନୁପ୍ରାୟ ହେଲା । ଯେ ଯାହା ବାଞ୍ଛା କଲା • ତାହା ଦେଲା । ବାଦ୍ଧାପଙ୍କା ସାର ରଥରୁ ଓହ୍ଲାଇ ସଧୀରେ ଚଳେ ଚଳସ୍ତସବୁ ଦିଗରେ ପୂର୍ଣ୍ଣ ହେଲା ଜୟ ଜୟ । ୧୫ । ଦେଖିଲେ ଦ୍ୱାରେ ପଡିଛି କବାଟ । ବସିଲେ ମହାପ୍ରଭୁ ଦେବଙ୍କ । ଅନୁରାଗ ଅନୁରାଗେମାନ । ସହଜେ ସ୍ୱଚ୍ଛାପ୍ରି ଭଗବାନ । ବୋଲନ୍ତି ଗୋ ଦାସି କପାଇଁ ପ୍ରବାସୀଠାରେ ଅନାଦର ଏତେ । ଏବେ ଛଣ୍ଡାଅ ଠାକୁରାଣୀଙ୍କ ଅନ୍ତରେ । ୧୭ । ଦାସୀ ବୋଲନ୍ତି ଅମ୍ଭ ପ୍ରଭୁଂଯାଇଁ । କଲଅଛନ୍ତି ମହାକଷ୍ଟକାଇ୭ । ଠାକୁ-ରାଣୀଙ୍କ ଶ୍ରୀଅଙ୍ଗ ଅଳସ । ବରହେ ହୋଇଛନ୍ତି ଅତି କୃଶ । ଚନ୍ଦ୍ରା-ନ୍ତରେ ମନ ସବୁର ବମନ୮ କାହାର ନାହଇ ସୁଖ । ଏ ପୁରେ ଅଇଲେ ପ୍ରଭୁ ପାଇବ ଦୁଃଖ । ୧୭ ପ୍ରଭୁ ବୋଲନ୍ତି ଏ କମ୍ବୁକଣ୍ଠକୁ । ଏଥି ମିଳଇ ଚତୁର୍ବର୍ଗ ଯାକ । ଗଙ୍ଗା ଚନ୍ଦ୍ରରେ ବଇକୁଣ୍ଠବାସୀ । କମଳା ଯାହାର ପାଟମହିଷୀ । ସେ ନଗରେ ଅଟି ଅଣାରେ ପ୍ରବାସୀ ହୋଇଥ ଯେବେ ନଗଶ । ତେବେ କାହାକୁ ବୋଲିବା କର୍ମର ଦୋଷ । ୧୮ । ଶୁଣି କମଳା ହସହସ ହୋଇ । ବୋଇଲେ ଦାସୀ ଦ୍ୱାର ଦିଅ ଫେଇ । ଝଟତି ଯନ୍ତ୍ର ଫେଡିଲେ • କବାଟ । ହୋଇଲେ ଲକ୍ଷ୍ମୀ ନାରାୟଣ ଭେଟ । ତେତେବେଳେ ଯାହା ହୋଇଲା କେ ତାହା କହିବ ଅବା ବଞ୍ଚନେ । କବ ଉପମା ନ ପାଇବେ ଛିଭୁବନେ । ୧୯ । ଅଟ୍ଟାଳିକ ଲୋକ ପାଇଲା ପଟ୍ଟ । ଅନ୍ତରୂଅନ ଲଭିଲାକେ ନେତ୍ର । କଥ ପାଇଲା ଶ ହରବ୍ରତ ହସ୍ତ । ଲେଖିଲେ ଏ ଅନାଦ

---

୧ଅର୍ଜୁନଙ୍କପରି ଦୁଇ ହାତରେ ବାଣ ମାରିବାକୁ ସମର୍ଥ । ୨ସେ ମିଳନ ଦେଖିବା ଲୋକଙ୍କ ନେତ୍ର । ୩ମୃତ୍ୟୁପଥ । ୪ଯମଦଣ୍ଡ । ୫ପ୍ରାର୍ଥନାକାରୀ । ୬ପ୍ରାର୍ଥନା କରିବାରୁ । ୭ପ୍ରଧାନ ରଥଯାତ୍ରାକୁ ନଜୟ । ୮ବ୍ୟାକୁଳ ।

ଅବା କେତେ । ଅରୁଣଉଦୟ ଦେଖି ଚକ୍ରଚୟ[୧] ଚନ୍ଦ୍ରମା ଗୁହ୍ନି ଚକୋର । ନେତ୍ର ପ୍ରୀତି ହେଲେ ସେ ନାଗରୀ ନାଗର । ୨୦ । ଏମନ୍ତ ସୁଖସମ୍ପତ୍ତି ବଢ଼ାଇ । ଶ୍ରୀଅଙ୍ଗୁ ସିନ୍ଦୁର ସେଭା[୨] କଢ଼ାଇ । ମନ୍ଦାସ୍ନାନ ସାରି ସୁବେଶ ହେଲେ । ଅମୃତଯୋଗାଡ଼ ମଣୋହି କଲେ । ଆଚମନ ଶେଷ କରି ଜଗନ୍ନାଥ ବୀଡ଼ିଅଲାଗିରେ ବସେ । ଅର୍ଣ୍ଣା ଦେଲେ ଗୁହ୍ନି ପ୍ରିୟଙ୍କ ମୁଖାମ୍ବୁଜେ[୩] । ୨୧ । ଅଳକୁ ଅମ୍ଭେ କହେ କେତେବାର । ନବଦିନ ନବଯୁଗ ପ୍ରକାର । ତୁମ୍ଭ ସ୍ନେହ ଯୌବନବାଳୁ କାମିନୀ । କଦ ଦେଖା ଦେଇ ନାହିଁ ଯାମିନୀ । କର୍ପୂର ଚନ୍ଦନ ଫୁଲ ବେଶମାନ କେହୁ ନୁହେ ସୁଖକରୀ ମନ ତୁମ୍ଭ ପାଶରେ ଥାଏ ନିରନ୍ତର । ୨୨ । ପ୍ରତିଚକ୍ଷୁ ଯେବେ ଅନ୍ତର ଥିଲେ । ଅକ୍ଷରେ ବର୍ଣ୍ଣିଲେ ନ ଦିଶେ ଭଲେ । ସେହୁ ପ୍ରକାରେ ତୁମ୍ଭ ରୂପ ଦେଖି । ଦେହେଁ ଯଉଯିଏ ମାତ୍ର ଅଳ୍ପ ରଖି । ଗୀତ, ବାଦ୍ୟ, ନୃତ୍ୟ ହେଲେ ଅପ୍ରମିତ ନ ଦେନଇ ତହିଁ ଚିତ୍ତ । ବ୍ରହ୍ମଜ୍ଞାନରେ ମହାଯୋଗୀନ୍ଦ୍ର ଯେମନ୍ତ । ୨୩ । ଷଡ଼ରସରେ ନାନାଭୋଗମାନ । ସ୍ୱାଦୁ ନୁହଇ ଲାଗେ ଅନ ଅନ । କମଳା କହିଲା ଦିନୁ ଦେଶ । ବୁଦ୍ଧି ବିବେକ ହୋଇଲା ବିନାଶ । ବରଷା କୋକିଳ ପ୍ରାୟ ତତକାଳ ମୁଖରୁ ନଇଲା ଭାଷା । କହୁ କରଣ କେତେ କହିବୁ ସେ ଦଶା । ୨୪ । ଏମନ୍ତ କରି କହି ସ୍ନେହବାଣୀ । ସନ୍ତୋଷ କଲେ ଦେବୀ କମଳନୀ[୪] । ବଳୁରି ବଢ଼ାସିହାର ବଢ଼ାଇ । ଦେବତାମାନଙ୍କୁ ମେଲାଣି ଦେଇ । ଦିବ୍ୟ ପଲଙ୍କ ଉପରେ ପହୁଡ଼ିଲେ କମଳା କରନ୍ତି ସେବା । ଏତେକେ ରହିଲା ଦୀନକୃଷ୍ଣ କହିବା । ୨୫ ।

* * *

୧ଚକ୍ରବାକ ପକ୍ଷୀମାନେ । ୨ଅଙ୍ଗରେଖା । ୩ମୁଖପଦ୍ମରୁ । ୪ଲକ୍ଷ୍ମୀଙ୍କି ।

## ଚତୁର୍ଦ୍ଦଶ ଛନ୍ଦ ।

### ରାଗ ବଙ୍ଗଳାଶ୍ରୀ । କଳ୍ପଲତାବାଣୀ ।

ଏଥୁ ଅନନ୍ତରେ ନିଶା ହୁଏ ଅବସାନ । ସମସ୍ତ ଦିଗେ ଶୁଭିଲା ତାମ୍ରଚୂଡ଼[୧] ସ୍ୱନ । ଉପବନ ବନେ ପକ୍ଷୀ । କଲେ କୋଳାହଳ । ଚକ୍ର[୨] ଚକ୍ରବାକୀ ସଙ୍ଗତରେ ହେଲେ ମେଳ । ୧ । ରାଜ୍ୟଭ୍ରଷ୍ଟ ରାଜା ପ୍ରାୟେ ରାଜା[୩] ଜ୍ୟୋତିହୀନ । କୁଗ୍ରାମ ଗୁଣୀ ପ୍ରାୟେ ଚକୋର ହେଲେ ଦୀନ[୪] । ଅଦୃଶ୍ୟ ତାତକା[୫] ପ୍ରାୟେ ତାରକା ଅଦୃଶ୍ୟ । ହାବଭାବ[୬] ଘେନ ଗଲା ଚନ୍ଦ୍ରକାନ୍ତ ହଂସ[୭] । ୨ । ରୂପାଜୀବୀ[୮] ମନ୍ଦିରରୁ ବାହାର ଭୁଜଙ୍ଗ[୯] । ଚୋର ପ୍ରାୟେ ହୋଇ ଗଲେ ତରଙ୍ଗ ତରଙ୍ଗ । ଉପପତିମାନେ ଥୂପେ ମଣ୍ଡକ ପରାୟେ । ପଳାଇ ପଶିଲେ ଯାଇ ଆପଣା ନିଳୟେ[୧୦] । ୩ । ମିଥ୍ୟାବାଦୀ ବଚନକୁ ଲୋଭୀ ପ୍ରାୟେ ହୋଇ । ସଙ୍କେତ ସ୍ଥାନେ କେ ଅଭିସାରିକା[୧୧] ନ ଯାଇ । ଅବିବେକୀ କୃପଣ ଦ୍ୱାର ମାର୍ଗଣ[୧୨] ପ୍ରାୟେ । କାମାତୁର ହୋଇ ଦୀର୍ଘନିଃଶ୍ୱାସ ଛଡ଼ାଏ । ୪ । ବରବେଶ ପ୍ରାୟେ କେହୁ ଶଠର[୧୩] ଅକୃତି । ଉପହାସ କଲା ଦେଖି ଖଣ୍ଡିତା[୧୪] ଯୁବତୀ । ହସ ରୋଷ ମିଶାଇ ବୋଇଲା ଅହେ କାନ୍ତା[୧୫] । କାଲି ରାତ୍ରି କାହାକୁ ହୋଇଲ ତୁମ୍ଭେ ବାନ୍ଧା । ୫ । ଗଣ୍ଡରେ ତାମ୍ବୂଳ ବୋଳ ଅଧରେ କଜ୍ଜଳ । ଏତେ ବିପରୀତ ବେଶ ହେବାର କି ଫଳ । ୬ । କପାଳେ ଅଳତା-ଚିତା ଭଲା ତୁମ୍ଭ କର୍ମ । ଶ୍ରମ ପାଇ ପଡ଼ାଇ ଅଛିଲ ତାହୁଂ ଶର୍ମ[୧୬] । କଉଶିକ[୧୭] ପ୍ରାୟେ ବସିଥିଲ କାହା କୁଟେ[୧୮] । ଏବେ ଆସିଅଛ ପଶିବାକୁ କାହା

---

୧କୁକ୍କୁଟ । ୨ଚକ୍ରବାକ । ୩ଚନ୍ଦ୍ର । ୪ଦୁଃଖୀ । ୫ଚନ୍ଦ୍ରର ତାପ । ୬ଗତି । ୭ଚନ୍ଦ୍ରଙ୍କର ଜ୍ୟୋତିରୂପ ହଂସକୁ । ୮ବେଶ୍ୟା । ୯ବିଟପୁରୁଷ । ୧୦ଗୃହରେ । ୧୧ସଙ୍କେତସ୍ଥାନକୁ ଯିବା ନାୟିକାକୁ । ୧୨ମାଗିବାଲୋକ ୧୩ଧୂର୍ତ୍ତନାୟକର । ୧୪ସ୍ୱାମିର ପରସ୍ତ୍ରୀ ଗମନ ଚିହ୍ନ ଦର୍ଶନରେ ଈର୍ଷାଯୁକ୍ତନାୟିକା । ୧୫ସ୍ୱାମୀ । ୧୬ସୁଖ । ୧୭ପେଚକ । ୧୮ପୁରେ ।

ହୋଟେ୧ । କେଉଁ ରମଣୀ ରମଣ୨ ପାଶରୁ ଉଠିଲେ । ଜୃମ୍ଭାଳସ୍ୟ ହୋଇ ଉଠ ବୋଲି ଡାକି ଦେଲା । ୭ । ନିଶାଚରପ୍ରଧାନ୩ ଜାର୪ ପ୍ରୀତି ପ୍ରାୟେ ଗଲା । ହିଙ୍ଗୁ ଘୋଷ ଜିଣି ଦଧିମନ୍ଥନ ଶୁଭିଲା । ରମଣୀମଣି ରମଣୀୟ ଗୀତ ପରାୟେ । କଳରବେ୫ କଳରବ୬ କଲେ ଅତିଶୟେ । ୮ । ଉତ୍ତମ କାମିନୀଙ୍କ ନିଃଶ୍ୱାସ ପ୍ରାୟେ ହୋଇ । ମନ୍ଦଗନ୍ଧ ସୁଶୀତଳ ପବନ ବହଇ । ନାଗରୀଙ୍କି ନାଗର କଲାକ ପ୍ରାୟେ ସ୍ତୁତି । କୁମୁଦ ପାଶେ ମଧୁପେ ମଧୁରେ ଗୁଞ୍ଜନ୍ତି । ୯ । କୃଷ୍ଣ କଥା ଶ୍ରବଣରେ ପାତକ ପରାୟେ । ଅନାଉଁ ଅନାଉଁ ଅନ୍ଧକାର ଗଲା କ୍ଷୟେ । ଦୀନବନ୍ଧୁ୭ ପ୍ରାୟେ ଦିନବନ୍ଧୁ୮ ପ୍ରକାଶିଲେ । ଶ୍ରୀକରରେ୯ ଅରବିନ୍ଦ ଚକ୍ର୧୦ ବିକାଶିଲେ୧୧ ।୧୦। ଦେବାଳୟମାନଙ୍କରେ ଶୁଭେ ଶଙ୍ଖଧ୍ୱନି । ସ୍ନାନ କରିବାକୁ ସମୁଦ୍ରରେ୧୨ ଗଲେ ମନ୍ଦ । ଶାରୀ ଶୁକମାନେ ମୃଦୁ ରବକୁ ତେଜିଲେ । ଶ୍ରୀରାମ ଶ୍ରୀରାଧା କୃଷ୍ଣ ନାମକୁ ଭଜିଲେ । ୧୧ । ଗୃହବର୍ଣ୍ଣି ବ୍ୟାପିରେ ହୋଇଲେ ପରବେଶ । ଚକ୍ରଧର୧୩ ସୁମର କେ ହୋଇଲେ ହରଷ । କାକମାନେ ଡାକ ଦେଇ ବସାରୁ ଉଡ଼ିଲେ । ପଥିକେ ଯେ ଯାହା ଦ୍ରବ୍ୟମାନ ସଜାଡ଼ିଲେ । ୧୨ । ଜଗନ୍ନାଥ ଦେବରାଜ ହୋନ୍ତେ ଅପହୁଡ଼ି୧୪ । ସେବକେ ଖଟିଲେ ସାତ ମାଜଣା ଯୋଗାଡ଼ । ଖଣ୍ଟଣିଆମାନେ ଅବୋଲିଲେ ଯେଝା ସେବା ଠିକ କହିବ ତାଙ୍କ ଭାଗ୍ୟ ବଚନରେ ଅବା । ୧୩ । ଦେବଙ୍କୁ ଦୁର୍ଲଭ ଯେଉଁ ପ୍ରଭୁ ଦରଶନ । ଅଷ୍ଟାଙ୍ଗଯୋଗରେ ଯୋଗୀ ଯାଙ୍କୁ କରେ ଧ୍ୟାନ । ସେ ପ୍ରଭୁ ସେବା ଦୁର୍ଲଭ ତାଙ୍କୁ ନିଶି ଦିନ । ଏହୁ ଉପେନି କରନ୍ତି ତାହାଙ୍କୁ ଅଧୀନ । ୧୪ । ଦେଣ ଶେଷେ ଧୂପ ସାର ଅଗମନ ସାର । ବୀଜିଅ

---

୧ଘରେ । ୨ସ୍ୱାମୀ । ୩ରାତ୍ରିଚର ଜନ୍ତୁମାନଙ୍କର ପ୍ରଧାନ । ୪ଚଉ-ପୁରୁଷ । ୫ପିକ ଓ ପାରାଏମାନେ । ୬ମଧୁର ଧ୍ୱନି । ୭ଦୁଃଖୀ-ଲୋକର ବନ୍ଧୁ । ୮ସୂର୍ଯ୍ୟ । ୯ଶୁଭ୍ରକିରଣଦ୍ୱାରା । ୧୦ପଦ୍ମ ସମୂହକୁ । ୧୧ଫୁଟାଇଲେ । ୧୨ଭୁରା ହୋଇ । ୧୩ବିଷ୍ଣୁଙ୍କର ନାମ । ୧୪ନିଦ୍ରୋତ୍ଥିତ ।

ଲାଗିରେ ବଳେ ନୀଳାଦ୍ରିକେଶରୀ[୧] । ଗୀତ ନୃତ୍ୟ ତାନମାନ ଛତିଶ ସଙ୍ଗରେ । ଅନନ୍ଦେ ନୃତ୍ୟ କରନ୍ତି ଗନ୍ଧର୍ବ ଛନ୍ଦରେ । ୧୫ । ଏହିରୂପେ ତିନି ଯୁଗ ପାଞ୍ଚ ଅବକାଶ । ଏତାଳ ଶୟନ କଲେ ପରମ-ପୁରୁଷ । ଅଯୁନା[୨] ପାର୍ଶ୍ୱ ଲେଉଟି[୩] ବରଷାରେ ଗଲା । ଶରଦ ସମୟ ଆସି ପ୍ରବେଶ ହୋଇଲା । ୧୬ । କୃପଣ ବାଗାଡ଼ମ୍ବର ଲୋକ[୪] ପ୍ରାୟ ହୋଇ । ଧ୍ୱନି କଲେ ମେଘ ଜଳଦାନକୁ ନ ଦେଇ । ବିଷ୍ଣୁ ବକ୍ଷର ହୃଦରେ କଉସ୍ତୁଭ ପ୍ରାୟେ । ନିର୍ମଳ ଗଗନରେ ତାରକା ଶୋଭା ପାଏ । ୧୭ । ତାର[୫] ମୋତିକା ନିକର ସ୍ୱରୂପ ଦିଶନ୍ତି । ଅମୃତ-ଅଧାରେ[୬] ଯେସନ୍ତ ଚନ୍ଦ୍ରକାନ୍ତି[୭] ଗତି । ସୁଧା ହୃଦ[୮] ପ୍ରାୟେ ଦିଗ ଦିଶିଲେ ପ୍ରସନ୍ନ । ସୁଖୀ ହେଲେ ଚକୋର ନୃତ୍ୟକ ହେଲେ ଦୀନ[୯] । ୧୮ । ପତିବନ୍ତୁ ପତ୍ନୀ ଯେସନ୍ତ ବେଶକ୍ଷ କାମିନୀ । ତେହ୍ନରୂପେ ଶିଖୀ[୧୦] ଶିନ୍ନଭିନ୍ନ ହୁଏ ପକ୍ଷୀ । ଚନ୍ଦ୍ରକଣ୍ଠ[୧୧] ପ୍ରାୟେ ମୁନିକୁସୁମ[୧୨] ପ୍ରକାଶ । ଭ୍ରମର ପ୍ରାୟ ଦିଶିଲେ ତଣ୍ଡୀ କୁସୁମ[୧୩] । ୧୯ । ଗ୍ରୀଷ୍ମୀହାଙ୍କ ପ୍ରାୟେ କାଶ[୧୪] ବିକାଶ ହୋଇଲେ । ମାନସ[୧୫] [illegible] ମାନସତଳବାସି ଏ[୧୬] ଅଇଲେ । ଧରଣୀ ପୁଷ୍କରଣୀରେ ହେଲା ଅତି ସଙ୍ଗ । ସଙ୍ଗେ ଯେନି ରମଣୀଙ୍କ କଲେ ନାନାରଙ୍ଗ । ୨୦ । ସମସ୍ତ ଜଳମାନଙ୍କ କଳୁଷ[୧୭] ଗୁଟିଲେ । ସୁମୁଖୀ ମୁଖ ପ୍ରାୟେ କମଳ ଫୁଟିଲେ । ପୀତାମ୍ବର[୧୮] ଅଙ୍ଗେ ପୀତ-ଅମ୍ବର[୧୯] ପରାୟେ । ହରିତମାନଙ୍କରେ[୨୦] କେଦାର[୨୧] ଶୋଭା ପାଏ । ୨୧ । ରସାଳପତ୍ର ବେତାଳଣା[୨୨] ପ୍ରାୟ ଶୁକପନ୍ତି । ଉଡ଼ିଯିବାରେ ଆକାଶ

---

୧ନୀଳପର୍ବତର ସିଂହ ଜଗନ୍ନାଥଦେବ । ୨ବସ୍ତର । ୩ପାର୍ଶ୍ୱପରିବ-ର୍ତ୍ତନ । ୪ଅଡ଼ମ୍ବର ଦେଖାଇ କଥା କହିବା କୃପଣଲୋକ । ୫ଉଜ୍ଜ୍ୱଳ । ୬ସମୁଦ୍ରରେ । ୭ପ୍ରତିବିମ୍ବିତ ଚନ୍ଦ୍ରଛବି । ୮ସ୍ୱଚ୍ଛ ହୃଦୟ । ୯ଦୁଃଖିତ । ୧୦ମୟୂର । ୧୧ଧୂଁ ଶାସ୍ତୁଚାନ୍ଦ୍ରି । ୧୨ଅଗସ୍ତିଫୁଲ । ୧୩ତଣ୍ଡୀ-ଫୁଲ । ୧୪କାଇଁଶ । ୧୫ମାନସରୋବରରୁ । ୧୬ରାଜହଂସ-ମାନେ । ୧୭ଘୋଳିଆଭାବ । ୧୮ବିଷ୍ଣୁ । ୧୯ପୀତବସ୍ତ୍ର । ୨୦ସବୁଦିଗରେ । ୨୧ଶସ୍ୟକ୍ଷେତ୍ର । ୨୨ଅନ୍ୟପତ୍ରରଂମାଳା ।

ସୁନ୍ଦର ଦିଶନ୍ତି । ଏମନ୍ତେ ଶରଦର୍ତ୍ତୁ କାର୍ତ୍ତିକମାହରେ । ଶୟନ୍ନୁ ଉଠି-
ଲେ ପ୍ରଭୁ ଆପଣା ବାସରେ । ୨୨ । ବାଜିଲା ବହୁଧ ବାଦ୍ୟ ଅତ୍ୟନ୍ତ
ଧମ୍ଭରେ । ମହା ଉତ୍ସବ ହୋଇଲା ସବୁ ଲୋକଙ୍କରେ । ଏମନ୍ତ
ହୋଇ ଶ୍ରୀଜଗନ୍ନାଥଙ୍କ ଚରିତ । ଜଗମୋହନ ନାମରେ ହୋଇଲା
ଏ ଗୀତ । ୨୩ । ସାଧୁଜନମାନେ ଶୁଣ ଏହା ମନ ଦେଇ । ଜଗନ୍ନାଥ
ଚରଣେ ଭକତିମନ୍ତ ହୋଇ । ନ ଜାଣଇ ପାଠ ମୋର ଜ୍ଞାନ କିଛି
ନାହିଁ । ଭାଷାରେ କହିଲି ସ୍ତବଗାଥା୧ ଭାବ ବହି । ୨୪ । ଜଳଧିରୁ
ଜଳବିନ୍ଦୁ ଅଣିଲା ପକ୍ଷୀଏ । ଜଗନ୍ନାଥ ଯାତ୍ରାବିଧି କହିଲି ଥୋକାଏ ।
ଅପ୍ରମିତ ଅନନ୍ତର୩ ନ ଥିଲେହେଁ ଅନ୍ତ୪ । ଆପଣା ବଳରେ ପକ୍ଷୀ
ଉଡ଼ଇ ଯେମନ୍ତ । ୨୫ । ସେହିରୂପେ ଉତ୍ସବ ଅନେକରୂପେ ଅଛି ।
କହିଲି ସାର ଦ୍ୱାଦଶ ଯାତ୍ରାବିଧି ବାଛି । ସାଧୁଜନମାନଙ୍କ ସଙ୍ଗରେ
ତାହା ଦେଖି । ଚିତ୍ତ କରି ହୃଦୟମଧରେ ଥିଲି ରଖି ।୨୬। ଯେତେ-
ବେଳେ ପ୍ରବେଶ ହୋଇଲା ନାନା ଦୁଃଖ । ବାହାର ତା କଲି ପାଇ-
ବାକୁ ମହାସୁଖ । ଜଗନ୍ନାଥ ଚରିତ ଅମୂଲ୍ୟ ରତ୍ନମଣି । ସବୁଠାକୁ
ଭରସା ତା କହିଅଛି ଜାଣି ।୨୭। ଦୁସ୍ତର କାଳକାନ୍ତାର୫ ତରିବାର
ପାଇଁ । ଅହର୍ନିଶି ହୃଦ-ସମ୍ପୁଟରେ୬ ଥୋଇ ଥାଇ । ଜଗନ୍ନାଥ ନାମ
ମୋର ପରମମଙ୍ଗଳ । ଜଗନ୍ନାଥ ନାମ ମୋର ସବୁଠାକୁ ବଳ ।୨୮
ଜଗନ୍ନାଥ ନାମ ଭବଜଳଧିକ୭ ଭେଳା । ଜଗନ୍ନାଥ ନାମ ଦୁଃଖ-
ଅନ୍ଧାରକୁ ଜୁଳା । ଜଗନ୍ନାଥ ନାମ ମୋର ଯପ ତପ ଦାନ । ଜଗନ୍ନାଥ
ନାମ ସବୁ ବାର ବ୍ରତମାନ । ୨୯ । ଜଗନ୍ନାଥ ନାମ ମୋର ସବ ଧର୍ମ
କର୍ମ । ଜଗନ୍ନାଥ ନାମ ମୋର ନାଶେ ଭବଭ୍ରମ । ଜଗନ୍ନାଥ ନାମ
ମୋର ଅଭୟପଞ୍ଜର୮ । ଜଗନ୍ନାଥ ନାମ ମୋର ସବୁ ସୁଖଘର ।୩୦।
ଜଗନ୍ନାଥ ନାମ ଗୁଣବର୍ଣ୍ଣ ରଖ ହୃଦେ । ଜଗନ୍ନାଥ ନାମ ଗୋଟି

---

୧ଆଡ଼ମ୍ବର । ୨ଜଗନ୍ନାଥଦେବ । ୩ଅପରସୀମ ଆକାଶର । ୪ସୀମା, ପାର । ୫ଗହନ, ବନ । ୬ହୃତପଟୁଆରେ । ୭ସଂସାର-ସାଗରକୁ । ୮ସହାରମାପ୍ତା । ୯ଦୟଗୁଣ୍ୟ ଅଭୟସ୍ଥାନ ।

